# ଯେଝା ବାଟରେ ଯିଏ

ସଦାନନ୍ଦ ତ୍ରିପାଠୀ




ଅଗ୍ରଦୂତ
କଟକ-୨

॥ ଯେଝା ବାଟରେ ଯିଏ ॥ ଲେଖକ : ସଦାନନ୍ଦ ତ୍ରିପାଠୀ ॥ ପ୍ରକାଶକ: ଅଗ୍ରଦୂତ ବାଙ୍କାବଜାର, କଟକ-୨ ॥ ପ୍ରଥମ ପ୍ରକାଶ : ଡିସେମ୍ବର, ୧୯୯୪ ॥ ପ୍ରଚ୍ଛଦ : ଛନ୍ଦାଚରଣ ଆଚାର୍ଯ୍ୟ ॥ ମୁଦ୍ରଣ : ଶ୍ରୀ ଭରଦ୍ୱାଜ ପ୍ରେସ (ବିଶ୍ୱନାଥ ଲେନ୍), ବାଲୁବଜାର, କଟକ-୨ ॥ ମୂଲ୍ୟ : ପଞ୍ଚତିରିଶ ଟଙ୍କା ॥



॥ JEJHA BATARE JIE ( A Collection of Short Stories ) By : Sadananda Tripathy ॥ (c) Mrs. Madhuri Tripathy ॥ Published by : AGRADUTA, Banka Bazar, Cuttack-2 ॥ Artist by : Chhanda Ch. Acharya ॥ Printed by : Sri Bharadwaz Press, Cuttack-2 ॥ Price : Rs. 35-00 ॥

ISBN 81-86354—09-3

ପରମାରାଧ୍ୟ ମୋର ଦଦେଇ

୰ ଭଗବାନ ତ୍ରିପାଠୀଙ୍କ ପବିତ୍ର ସ୍ମୃତିରେ

ସଦାନନ୍ଦ

# ସୂଚୀ





# ଏକାକୀ

ଡକ୍ଟର ମହାବୀର ମହାପାତ୍ର ଦର୍ଶନଶାସ୍ତ୍ରର ଅଧ୍ୟାପକ । ଏଲ୍. ଏଲ୍. କଲେଜକୁ ବଦଳି ହୋଇ ଆସିବାର ମାତ୍ର ଦୁଇମାସ ମଧ୍ୟରେ ସେ ଦାରୁଣ ସଙ୍କଟର ସମ୍ମୁଖୀନ ହେଲେ । ପଛରେ ଯିଏ ଯାହା ବ୍ୟଙ୍ଗ କରୁଥିଲା, ସହିଯାଇ ହେଉଥିଲା । କିନ୍ତୁ ଆସ୍ତେ ଆସ୍ତେ ଛାତ୍ରମାନଙ୍କ ସମେତ କେତେ କେତେ ସହକର୍ମୀ ଅଧ୍ୟାପକ ମଧ୍ୟ ସାମନାସାମନି ଉପହାସ କରିବା ହେତୁ ତାଙ୍କୁ ବଡ଼ ଅଡୁଆ ଲାଗିଲା । ତଥାପି ଯାବତୀୟ ପରିହାସକୁ ଶୁଣି ନଶୁଣିଲା ପରି ସେ ଛଅମାସ କଟାଇ ଦେଲେ । ତା'ପରେ ତାଙ୍କର ଧୈର୍ଯ୍ୟ ଓ ମନୋବଳ ଭାଙ୍ଗିଯିବା ଭଳି ଘଟଣା ଘଟିଲା ଏବଂ ସେ ଆଉ ବରଦାସ୍ତ କରିପାରିଲେ ନାହିଁ । ଏକାକୀ ଅରବିନ୍ଦ ତାଙ୍କ ଅସହାୟତା ଦେଖି ପାଖରେ ଆସି ଠିଆ ହେଲା । ସେ ତାକୁ ଫେରିଯିବାକୁ ଅନୁରୋଧ କଲେ । ହୁଏତ ପ୍ରଚଣ୍ଡ ଅଭିମାନରେ କହିଲେ, ମତେ ଏକଲା ଛାଡ଼ିଦିଅ । ନିଜକୁ ପୂରାପୂରି ଏକଲା ବୋଲି ଜାଣିବାକୁ, ଅନୁଭବ କରିବାକୁ ଦିଅ ।

ଅରବିନ୍ଦ ମାନିଲା ନାହିଁ । ସେ ମାନେନା । ତାକୁ ଯାହା ଠିକ୍ ଲାଗେ, ସେ କରେ । ଭାରି ଉଦ୍ଦଣ୍ଡ, ବୁଦ୍ଧିମତ୍ତାପୂର୍ଣ୍ଣ ପିଲା ଅରବିନ୍ଦ । ଅଧିକାଂଶ ପିଲା ତାକୁ ଖାତିର ଦେଖାନ୍ତି, ଭୟ ବି କରନ୍ତି । ଖୋଲା ଜାଗାରେ ଠିଆ ହୋଇ ଗଳ୍ପକରି ହସୁଥିବା ଝିଅଙ୍କୁ ଦେଖିଲେ ପାଖକୁ ଯାଇ ସେ କହେ, ଏଇଠି ଏମିତି ଠିଆ ହେଇ ପାଟି କଣ ଲେସଉଛ ? ତମେ ଏଣେ ନିଜ ମହତ, ସ୍ଥାନ, କାଳକୁ ଭୁଲିବ; ତେଣେ ବାଟଘାଟରେ

ଗଲାବେଳେ କିଛି ଘଟଣା ଘଟିଲେ ବୋପାମାନେ ଦୋଷ ଦେବେ ପୋଲିସ୍‌କୁ, ସରକାରକୁ ? ଏମିତି ଏମିତିରେ ତମେ କାହାକାହା ଗୁଣ୍ଡାରେ କରିତ ଚଳେଇ ସାରିଲଣି, ସେକଥା ତମେ ଜାଣିପାରୁଛ ନା, ପୋଲିସ୍ କି ସରକାର ଦେଖିଛି ? ଅରବିନ୍ଦକୁ ଦେଖିଲେ ଝିଅମାନେ ଛପିଯାଆନ୍ତି । ଅଥବା ତା’ ଆଡ଼କୁ ପିଠିକରି ମୁଣ୍ଡ ନୁଆଇଁ ଠିଆ ହୋଇଯାଆନ୍ତି । କଲେଜ ନିର୍ବାଚନରେ ସେ କେବେ ଲଢ଼ିନାହିଁ । କୌଣସି ରାଜନୈତିକ ଦଳ ସହ ତାର ସମ୍ପର୍କ ନାହିଁ । ପ୍ରଚଣ୍ଡ ସାହସୀ, ଉଦ୍ଦାମ ଅରବିନ୍ଦ । ସମସ୍ତ ରାଜନୈତିକ ଦଳର ପ୍ରତିନିଧି ଛାତ୍ର ନେତା-ମାନେ ସୁଦ୍ଧା ତା’ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ କରିଥାନ୍ତି; ବେଳେବେଳେ ତା’ର ପରାମର୍ଶ ମଧ ନେଉଥାନ୍ତି । ସେ ପଢ଼େ ଭଲ; କିନ୍ତୁ ଶାନ୍ତ, ସୁଧୀର ନୁହେଁ । ସବୁ କଥାରେ ଶାଳୀନତା ବି ରକ୍ଷା କରିପାରେ ନାହିଁ । ତେବେ ତା ବ୍ୟକ୍ତିତ୍ୱକୁ ମଜବୁତ କରିବାରେ ତା’ ଦେହେରାର ଯଥେଷ୍ଟ ଅବଦାନ ରହିଛି । ଛଅଫୁଟ ଦୀର୍ଘ ହୃଷ୍ଟପୁଷ୍ଟ ଶରୀର । ମଞ୍ଜିକାଠ ଭଳି ଦୁଇଟି ସଶକ୍ତ ଗୋଡ଼ । ଦୀର୍ଘ, ବଳିଷ୍ଠ ହାତ । ଚଉଡ଼ା ଛାତି । ଉଜ୍ଜ୍ୱଳ, ଗୋରିକୋଣିଆ ମୁହଁ । ନିର୍ମଳ, ତେଜସ୍ୱୀନ ଆଖି । ଷ୍ଟ୍ରେଟଷ୍ଟ୍ରେଟ କରି ସେ କାଟିଥାଏ ତା ଚୁଟି । ସବୁଠୁ ଆକର୍ଷଣୀୟ ତାର ବେକରୁ ଓହଳି ଥିବା କଳାଫିତା ଓ ସେଥିରେ ଲାଗିଥିବା ରୁପାର ତାବିଜ । ତାବିଜ୍ ଉପରେ ଖୋଦେଇ ହୋଇଛି ତିନୋଟି ଅକ୍ଷର—ଆଜାଦ୍ । ସେ କହେ, ସେ ଆଜାଦ, ମୁକ୍ତ । ସାର୍ଟର ଦୁଇଟି ବୋତାମ ଅନବରତ ଖୋଲା ରଖିଥାଏ । ଦେଖାଯାଉଥାଏ ଛାତିର ଗହଳ କେଶ । କେବେକେବେ କୌଣସି କାରଣରୁ ଖୁସି ହୋଇଗଲେ କଲେଜ ବିଲଡ଼ିଂ ମଝିରେ ଥିବା ଷ୍ଟ୍ରେଟ ପଡ଼ିଆ ମଝିରେ ଧୂଳିପାଟ୍ ନାଚ ଚିତ୍କାର କରେ, ୟା···ହୁଃ···। ପିଲାଏ ଜମନ୍ତି । ଖୁସି ହୁଅନ୍ତି । ଦୂରରେ ଥିବା ପିଲାମାନେ ଚିତ୍କାର ଶୁଣି କଥାହୁଅନ୍ତି, ଆଜାଦ୍ ଭାଇକୁ ଆଜି ବୋଧେ ରାଗ ଟେକିଚି ।

ଅରବିନ୍ଦ ଧନୀ ବାପର ପୁଅ । ଗାଁରେ ସେମାନଙ୍କର ଘର, ଜମିବାଡ଼, ନଡ଼ିଆ ବଗିଚା, ମାଛ ପୋଖରୀ । ସହରରେ ବ୍ୟବସାୟ, କଣ୍ଟ୍ରାକ୍ଟରୀ । ଘରେ ପୁଞ୍ଜେ ପାଞ୍ଚଟା ଚାକର, ପୂଝାରୀ । ସେଇ କାରଣରୁ

ହୁଏତ ତାର କୌଣସି କଥାକୁ ପରବାୟୁ ନଥାଏ । କଲେଜର ଉତ୍ସବ, ପୂଜା, ପିକ୍‌ନିକର ଆୟୋଜନରେ ସେ ପ୍ରଚୁର ଉତ୍ସାହ, ଉଦ୍ଦୀପନା ଦେଖାଏ । କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନେ ତା ସହ ସିଧାସିଧି କେବେ କଥାବାର୍ତ୍ତା କରନ୍ତି ନାହିଁ, କିନ୍ତୁ ତାକୁ ଖୁବ୍ ଭଲ ପାଆନ୍ତି । ଅଥଚ ଡକ୍ଟର ମହାପାତ୍ରଙ୍କ ପକ୍ଷ ନେଇ ସେ ଯେତେବେଳେ ଅନ୍ୟମାନଙ୍କୁ ଗାଳିଗୁଲଜ କଲା, ଧମକ ଦେଲା, କିଏ କହିଲା, ଯେମିତି ଗୁରୁକୁ ସେମିତି ଶିଷ୍ୟ ତ, ଆଉ କିଏ କହିଲା, ଗୁରୁଠୁ ବଳି ଶିଷ୍ୟ ।

ଡକ୍ଟର ମହାବୀର ମହାପାତ୍ର ଜୁନ୍ ମାସ ଶେଷ ଆଡ଼କୁ ବଦଳି ହୋଇ ଆସି ଏଲ୍. ଏଲ୍. କଲେଜରେ ଯୋଗଦେଲେ । ଦର୍ଶନ ବିଭାଗରେ ବି.ଏ. ଶେଷ ବର୍ଷର ଜଣେ ମାତ୍ର ଛାତ୍ର ଥିଲା । ସେ ଅରବିନ୍ଦ । ଏତେ ବଡ଼ ସହରର ଏତେ ବଡ଼ କଲେଜ । ଅଥଚ ଶେଷବର୍ଷରେ ଜଣେ ହିଁ ଛାତ୍ର ଫିଲସଫି ନେଇଛି ! ଡକ୍ଟର ମହାପାତ୍ରଙ୍କ ମନରେ ଅସନ୍ତୋଷ ଭରିଗଲା । ସେ ଯେଉଁ କଲେଜରୁ ଆସିଛନ୍ତି ସେଠାରେ ଅନ୍ତତଃ ପଚିଶରୁ ଊର୍ଦ୍ଧ୍ୱ ପିଲା ଥାଆନ୍ତି ଫିଲସଫିରେ ପ୍ରତିବର୍ଷ । ଅନର୍ସରେ ଷୋହଳକୁ ଷୋହଳ ନିଶ୍ଚୟ । ଏଠି ସର୍ବୋଚ୍ଚ ଶ୍ରେଣୀରେ ମାତ୍ର ଜଣେ ପିଲାକୁ ପଢ଼ାଇବେ ?

ଡକ୍ଟର ମହାପାତ୍ରଙ୍କୁ ନିକଟରୁ ଦେଖି ଅଳ୍ପ କିଛିଦିନ ମଧ୍ୟରେ ଅରବିନ୍ଦ ବୁଝିପାରିଲା, ସେ କଦାପି ଜଣେ ସାଧାରଣ ମଣିଷ ନୁହନ୍ତି । ହୁଏତ କିଛିଟା ଅସ୍ୱାଭାବିକ । ତାଙ୍କର ଭାବଭଙ୍ଗୀ ମୋଟେ ସହଜ ଲାଗେନାହିଁ । ଅରବିନ୍ଦ ମାତ୍ର ଜଣେ ଛାତ୍ର ଫିଲସଫି କ୍ଲାସ୍‌ରେ । ଅଥଚ ତାର କେନେରାଲ କ୍ଲାସ୍ ପଡ଼େ ଶହେ ଅଠେଇଶ ବା ଦୁଇଶହ ଛପନ ପିଲା ବସିପାରିବା ଭଳି ହଲ୍‌ରେ । ଅରବିନ୍ଦ ଯାଇ ଦୁଇ ତିନୋଟି ବେଞ୍ଚ ଛାଡ଼ି ବସେ । ମହାପାତ୍ର ସାର୍ ଆସନ୍ତି । ଉପସ୍ଥାନ ଖାତା ଖୋଲନ୍ତି । କ୍ଲାସ୍‌ର ଏକମାତ୍ର ଛାତ୍ର ଅରବିନ୍ଦ ସାମ୍ନାରେ ବସିଥାଏ । ତଥାପି ସେ ବିଧିବଦ୍ଧ ଭାବେ ଡାକନ୍ତି, ରୋଲ ନମ୍ବର ଇଲେଭେନ୍ ଥାର୍ଟି ଥ୍ରୀ । ଅରବିନ୍ଦ କହେ; ୟେସ୍ ସାର୍ ! ସେ ଉପସ୍ଥାନ ଖାତା ବନ୍ଦ କରନ୍ତି । ଖଣ୍ଡେ ଚକ୍ ଧରନ୍ତି । ସତେ ଯେମିତି ସେ ଶହେ ଅଠେଇଶ କି ଦୁଇଶହ

ଛପନ ଜଣ ଗ୍ରୁପଙ୍କୁ ଲେକ୍‌ଚର୍ ଦେଉଛନ୍ତି, ସେହି ସ୍ୱରରେ ପଢ଼ାଇବା ଆରମ୍ଭ କରନ୍ତି । ପଢ଼ାଇବା ବେଳେ ଅରବିନ୍ଦ ଆଡ଼େ ସିଧାସିଧି ଚାହାଁନ୍ତି ହିଁ ନାହିଁ । ମଝି ମଝିରେ, ଯେତେ କି ସେ ବହୁତ କିଛି ଲେଖି ପକେଇବେ, ସେଇ ଭଙ୍ଗୀରେ ଅନ୍ଧାଧୂନ୍ଦିଆ କଳାପଟା ପର୍ଯ୍ୟନ୍ତ ମାଡ଼ି ଯାଆନ୍ତି ଓ କଳାପଟା ଉପରେ ଚକ୍ ଦ୍ୱାରା କେବଳ ଗୋଟିଏ ବିନ୍ଦୁ ସୃଷ୍ଟି କରି ଚାଲିଆସନ୍ତି । ପଢ଼ାଇବା ବେଳେ ସେ ପ୍ରାୟ ବିହ୍ୱଳ ହୋଇ ଉଠନ୍ତି । ସାରେଗାମାପାଧାନିସା, ସାନିଧାପାମାଗାରେସା ଗାଇବା ଭଳି ଉଠ୍ ପଡ୍ ହେଉଥାଏ; ଦୋଳ ଖେଳୁଥାଏ ତାଙ୍କର ଗମ୍ଭୀର କଣ୍ଠସ୍ୱର । ଝର୍କା ସେପଟୁ ଅରବିନ୍ଦର ସହପାଠୀମାନେ ତାକୁ ଇଙ୍ଗିତରେ ଡାକନ୍ତି, ଆ···ବେ, ପଳେଇ ଆ', ସିଏ ତା'ର ଗର୍ଜୁଥାଉ ।

ବେଲ୍ ବାଜେ । ସାର୍ ତାଙ୍କ ବିହ୍ୱଳତାରୁ ନିବୃତ୍ତ ହୁଅନ୍ତି ନାହିଁ । ଅରବିନ୍ଦ ମନେ ପକାଇଦିଏ, ସାର୍ ! ବେଲ୍ ହେଲାଣି । ସାର୍ ଥମି ଯାଆନ୍ତି । ଉପସ୍ଥାନ ଖାତାଟିକୁ ଟେବୁଲ ଉପରୁ ଉଠାଇ ଏକମୁହାଁ କମନ୍‌ରୁମ୍ ଆଡ଼କୁ ଚାଲିଯାଆନ୍ତି । ଅରବିନ୍ଦ ବାହାରକୁ ଆସେ । ସେ ଦରଜା ପାର ହେବା ମାତ୍ରେ ଜଣେ କେହି ସହପାଠୀ ଚିତ୍କାର କରେ : ରୋଲ ନମ୍ବର ଇଲେଭେନ୍ ଥାର୍ଟି ଥ୍ରୀ ! ଅନ୍ୟ ଜଣେ ମୁଣ୍ଡ ହଲାଇ ହସିହସି କହେ : ନୋ ସାର୍ ! ଆଉ କିଏ ଉଚ୍ଚସ୍ୱରରେ ହିଁ ପଚାରେ, ବୁଢ଼ା ନିର୍ବାଚନୀ ସଭାରେ ଭାଷଣ ଦେଉଥାଏ ନା ତତେ ପଢ଼ାଉଥାଏ ବେ ?

ଅଳ୍ପ ଦୂରରେ ହିଁ ମହାପାତ୍ର ସାର୍ ଯାଉଥାନ୍ତି । ସେ ବୋଧହୁଏ କିଛି ହିଁ ଶୁଣିପାରନ୍ତି ନାହିଁ । ଅଥବା, ସେ ଖୁବ୍ ଚିନ୍ତାଶୀଳ ହୋଇଥିବାରୁ ନିଶ୍ଚୟ କିଛି ଗମ୍ଭୀର ଚିନ୍ତାରେ ମଗ୍ନ ରହି ଚାଲି ଯାଉଥାନ୍ତି । ସେ ଭୀଷଣ ଚୁପ୍‌ଚାପ୍ ମଣିଷ ଓ ସର୍ବଦା ଜଣାପଡ଼ନ୍ତି ଅତ୍ୟନ୍ତ ଅନ୍ୟମନସ୍କ । ସେ ମାଟି ଉପରେ ଚାଲୁଚାଲୁ ହୁଏତ ଅନ୍ୟ କେଉଁ ଗ୍ରହରେ ବା ଦିଗହୀନ ଶୂନ୍ୟରେ ବିଚରଣ କରୁଥାନ୍ତି । ତାଙ୍କୁ ପୃଥିବୀ ଉପରକୁ ଟାଣିଆଣିବା ପାଇଁ ଅନ୍ୟମାନଙ୍କ ପ୍ରୟାସ ଶୋଚନୀୟ ଭାବେ ବ୍ୟର୍ଥଯାଏ । ତାହା ହୁଏତ ଏକ କାରଣ ଯେଉଁଥିପାଇଁ ତାଙ୍କୁ ଉପହାସ କରିବାକୁ ଲାଳାୟିତ

ଲୋକମାନେ ଅପ୍ରସ୍ତୁତ ଅନୁଭବ କରନ୍ତି । ସେଥିପାଇଁ କେହି କେହି ତାଙ୍କୁ ନାଁ ଦେଇଛନ୍ତି ଡକ୍ଟର କେ. ଓ ଅଧ୍ୟାପକ ବ. । ଡକ୍ଟର ଖିଆଲି ବା ଅଧ୍ୟାପକ ବୋକା ।

ପ୍ରାୟ ସବୁକଥା ପ୍ରତି ମହାପାତ୍ର ସାର୍‌ଙ୍କର ଅନାସକ୍ତି ହେତୁ ତାଙ୍କୁ ପ୍ରାୟ ଏକଲା ହିଁ ରହିବାକୁ ପଡ଼େ । ପ୍ରଚଳିତ ସାଧାରଣ ଦୈନନ୍ଦିନ ଘଟଣା ଆଡ଼କୁ ସେ ଧ୍ୟାନ ଦିଅନ୍ତି ନାହିଁ । ଖବରକାଗଜ ପଢ଼ନ୍ତି ନାହିଁ । ଅଧ୍ୟାପକମାନଙ୍କ ସହ ସିନେମା, କ୍ରିକେଟ, ରାଜନୀତି, ଷ୍ଟେଫିଗ୍ରାଫ୍, ଗାବ୍ରିଏଲା ସାବାଟିନି, ତେନ୍ଦୁଲକର, ଜୁହିଚାଓ୍ୱଲା, ସଞ୍ଜୟ ଦତ୍ତ, ନରସିଂହ ରାଓ, ଆଡ଼ଭାନୀ, ବିଜୁ ପଟ୍ଟନାୟକ କିମ୍ବା ଅନୁରାଧା ବିଶ୍ୱାଳ ଉପରେ ଆଲୋଚନା କରନ୍ତି ନାହିଁ । ଏକା ଏକା ବସି ରହିଥାନ୍ତି କମନ୍ ରୁମ୍‌ର ଗୋଟିଏ କୋଣରେ । ବେଲ୍ ବାଜିଲେ ଉଠନ୍ତି । କ୍ଲାସକୁ ଯାଆନ୍ତି, ଫେରନ୍ତି । କଲେଜକୁ ଆସିଥାନ୍ତି ଏକା ଏକା ଓ ଏକା ଏକା ଫେରିଯାଆନ୍ତି । ଏକା ଏକା ବୁଲୁଥାନ୍ତି ବଜାରରେ । ହୋଟେଲରେ ଖାଇ ବସିଥାନ୍ତି ଏକାକୀ । ସବୁଠାରେ, ସବୁବେଳେ ଏକାଏକା । ଦରକାର ପଡ଼ିଲେ ପଦେ କଥା କହନ୍ତି, ନହେଲେ ନାହିଁ ।

ସେ ବିବାହ କରିନଥିଲେ । ତାଙ୍କର ବିବାହ-ବୟସ ଦୂର ଅତୀତରେ ବିଲୀନ ହୋଇସାରିଥିଲା । ଅର୍ଦ୍ଧାଧିକ କେଶ ଧଳା ହୋଇ-ଥିଲେ ବି ମୁହଁରେ ବିଲ୍‌କୁଲ୍ କୁଞ୍ଚ ଅବଶ୍ୟ ପଡ଼ିନଥିଲା । କିନ୍ତୁ ତାଙ୍କର ଉଚ୍ଚ କପାଳଟି ଯେତେ ତେଜୀୟାନ୍ ଦିଶୁଥିଲା, ମୁହଁରେ ଆଉ ସେତେ ତେଜ ନଥିଲା । ନିରାଡ଼ମ୍ବର ପୋଷାକପତ୍ର ତାଙ୍କର । ଏପରିକି ସେ ତାଙ୍କ ପୋଷାକ ସବୁ ନିୟମିତ ଇସ୍ତ୍ରି କରି ପିନ୍ଧୁନଥିଲେ । ଚାଲିଲାବେଳେ ସେ ସାଧାରଣତଃ ମୁଣ୍ଡ ଝୁଙ୍କାଇ ଚାଲୁଥିଲେ ଓ ତାଙ୍କର ସ୍ୱାସ୍ଥ୍ୟ ଖୁବ୍ ପତଳା ହୋଇଥିବାରୁ ପବନରେ ହଲହଲ ଯାଉଥିବା ପରି ଦିଶୁଥିଲେ ।

ମହାପାତ୍ର ସାର୍‌ଙ୍କର ଅବିବାହିତ ରହିବା ପଛରେ କିଛି କାରଣ ଥିଲେ ଥାଇପାରେ । କିନ୍ତୁ କାହାଣୀ ବନାଇବା ଲୋକ କେଉଁଠି ବା ନଥାନ୍ତି ? ମହାପାତ୍ର ସାର୍‌ଙ୍କର ପରା ଜଣେ ପ୍ରେମିକା ଥିଲା । ଅନନ୍ୟ

ସୁନ୍ଦରୀ । ଦିନେ ଜଣେ କିଏ ତାଙ୍କୁ କହିଲା, ଅପ୍‌ସରୀମାନଙ୍କୁ ଆଖିଠାରି ମାରିବା ଭଳି ଏ ରୂପ, ଉଚ୍ଛୁଳା ପାହାଡ଼ି ଝରଣା ପରି ଏ ଯୌବନ, ଏ ଲାବଣ୍ୟମୟ ମାଫିକ୍ ଶରୀର ପାଇ, ସିନେମାରେ ଅଭିନୟ କରିବାକୁ ଚାଲିନଯାଇ, ଅପଦାର୍ଥ ଅଧ୍ୟାପକଟା ପଛରେ କାହିଁକି ଲୁଙ୍ଗ୍ ପୁଙ୍ଗ୍ ହଉଚୁ ? ଫ୍ଲୋରେନ୍‌ସ ସମସ୍ତେ କଣ ଆଉ ଲିଭିଲା କି ଜୁଲିଏଟ୍ ଭଳି ପ୍ରାତଃସ୍ମରଣୀୟ ହୋଇ ପାରୁଛନ୍ତି ? ଇନ୍ଦିରା ଗାନ୍ଧୀ ବା ମାର୍ଗାରେଟ୍ ଥାଚର ପରି ଅମର ହେବାର ଭାଗ୍ୟ ମଧ୍ୟ କ୍ୱଚିତ୍ ନାରୀ ହାସଲ କରି-ପାରନ୍ତି । ଏବେ ଅମର ରହିବାର ସର୍ବୋତ୍କୃଷ୍ଟ ମାର୍ଗ ହେଲା ସିନେମାରେ ମିଶିଯିବା । ଯା', କାଳବିଳମ୍ବ ନକରି, ଚାଲିଯା' । ସେଇଠୁ ସିଏ ହିନ୍ଦୀ ସିନେମାର ହିରୋଇନ ହେବା ଅଭିଳାଷରେ ଚାଲିଗଲା ବମ୍ବେ । ମହାପାତ୍ରଙ୍କର ହୃଦୟ ଫାଟିଗଲା । ଭୁତ ବିଧ୍ୱସ୍ତ ହୋଇଗଲା । ତଥାପି ସେ ଦମ୍ଭଧରି ରହିଥିଲେ । ସିନେମାର ହିରୋଇନ ହେବାକୁ ଯାଇଥିବା ତାଙ୍କର ପ୍ରେମିକାଟି ପାଲଟିଗଲା ଏକ ନାଚବାଲୀ । ସେ ଭଲ ଓଡ଼ିଶୀ ନାଚୁଥିଲା । ସିନେମାରେ ଯେ କିନ୍ତୁ ଶୀଢ଼ଓ ନାଚିଲା । ଗୋଟିଏ ସିନେ-ମାରେ ସିଏ ଖଳନାୟକ ଓ ତା'ର ଚେଲାଗୁମ୍ଫାଙ୍କ ଦିଲ୍ ଖୁସ୍ କରିବାକୁ ଅଣ୍ଟା ଦୋହଲାଇ, ଶରୀର ଦେଖାଇ ସେମାନଙ୍କ ପାନପାତ୍ରରେ ପାନୀୟ ଭରିଭରି ଘୂରିଘୂରି ନାଚୁଥିଲା ଓ ଗାଉଥିଲା : ଆଜ୍ ହି ଲୁଟ୍ ଲୋ ମୁଝେ । ସେଇ ସିନେମାଟି ଦେଖି ବୁଢ଼ାର ମାଇଣ୍ଡ୍ ପୂରା ଫିଉଜ୍ ହୋଇଗଲା । ଭସ୍ମ ହେବାଯାଏ ଭୀଷ୍ମ ଭଳି ଅବିବାହିତ ରହିବାକୁ ସେ ପଣ କରିଦେଲା ।

ସେକଥା ଯେତେବେଳେ ବି ଶୁଣେ ଅରବିନ୍ଦ ସୁଦ୍ଧା ଅନିଚ୍ଛା ସତ୍ତ୍ୱେ ହସିବାକୁ ବାଧ୍ୟ ହୁଏ । ପ୍ରସନ୍ନ କିନ୍ତୁ ହସେନାହିଁ । ଗମ୍ଭୀର ଭାବରେ ଓଠକୁ ଓଠରେ ଜାବୁଡ଼ି ଧରି ମୁଣ୍ଡ ହଲାଏ ଓ କହେ, ଏକଥା ସତ ନୁହେଁ । କେହି କିଛି ଜାଣନ୍ତି ନାହିଁ । ନିରୋଳା ଗୁଜବ ଏସବୁ । ବୁଢ଼ାର ଚେହେରା ଯାହା, ତାକୁ ପରୀ କେଉଁ ସୁନ୍ଦରୀ ବାସି ପାଣିରେ ପଚାରିବାକୁ ଯାଉଥିଲା ! ଇଏ କାହାକୁ ପ୍ରେମ ଫ୍ରେମ କରି ଫ୍ରଷ୍ଟ୍ରେଟେଡ୍ ହୋଇଥିବା କଥା ଖାଣ୍ଟି ମିଛ । ବୁଢା ଅବିବାହିତ ବୋଲି ଯାହା ଶୁଣାଯାଏ, ତାହା ସତକଥା ନୁହେଁ । ଇଏ ବାହା ହୋଇଥିଲା । ଚଉଠି ରାତ୍ରିରେ ଅବଗୁଣ୍ଠନବତୀ ଅଭିସାରିକା ପତ୍ନୀକୁ ପଦୁଟିଏ କିଛି ନକହି ଦୀର୍ଘକାଳ

ନୀରବ ରହିବା ପରେ ଶେଷକୁ ଯେମିତି ଶୋଇପଡ଼ି ଘୁଙ୍ଗୁଡ଼ି ମାରନ୍ତି, ତା ସ୍ତ୍ରୀ ତାଙ୍କୁ ତେଣା ଝିଙ୍କି ନିଦରୁ ଉଠାଇଲା ଓ ଓଢ଼ଣା ଟେକି ପଚାରିଲା : ଆଜି ପରା ଆମର ହନିମୁନ୍ !

ବୁଢ଼ା କାବା ହେଲାଭଳି ପ୍ରଶ୍ନ କଲା : ହ...ନି...ମୁ...ନ୍...? ସେ କି ପଦାର୍ଥ ?

ତା' ପରଦିନ ବଡ଼ି ଭୋରରୁ ସେଇ ଡ୍ରେସ୍‌ରେ ତା ସ୍ତ୍ରୀ ଝୋଟିଝୋଟିର ଚାଲିଲା ତା' ବାପ ଘରକୁ । ଗଲା ଯେ ଯାଇଚି । ଆଉ ଫେରିଲା ନାହିଁ ।

ଡକ୍ଟର ମହାପାତ୍ରଙ୍କ ସମ୍ପର୍କରେ ଅଳ୍ପଦିନ ମଧ୍ୟରେ ସେହିଭଳି ରୋଚକ ଆଲୋଚନା ବରାବର ଲାଗିରହିଲା । ପିଲାମାନେ ଲୁଚିଛପି ପ୍ରାୟ ତାଙ୍କୁ ଟାହିଟାପରା କରନ୍ତି । ସେ କିଛି ଶୁଣିପାରନ୍ତି ନାହିଁ । କିଛି ହିଁ ଦେଖିପାରନ୍ତି ନାହିଁ । ଅରବିନ୍ଦ ଶୁଣେ । ଦେଖେ । ପ୍ରତିବାଦ, ତାଗିଦ କରିବାକୁ ତାର ଇଚ୍ଛା ହୁଏ । କିନ୍ତୁ ହୋ' ହୋ' ହୋଇ ହସୁଥିବା ପିଲାଙ୍କ ଗହଣରେ ସେ ଏକା ପଡ଼ିଯାଏ ।

ମହାପାତ୍ର ସାର୍‌ଙ୍କ ଭଡ଼ାଘର ପ୍ରସଙ୍ଗ ତାଙ୍କୁ ଅଧିକ ଉପହସିତ କରିବାକୁ ଖୋରାକ ଯୋଗାଇଲା । ପ୍ରଥମ ଘରଟିକୁ ସେ ମାସକ ପରେ ଛାଡ଼ିଦେଲେ ଓ ଦ୍ୱିତୀୟ ଘରଟିକୁ ଆଉ ମାସକ ପରେ ଛାଡ଼ିବାକୁ ପଡ଼ିଲା । ବଦଳି ହୋଇ ଆସିବା ପରେ ସେ ଜଣକ ଘରର ଏକ ଅଂଶ ଭଡ଼ା ସୂତ୍ରରେ ନେଇ ରହୁଥିଲେ । ମଝିରେ କାନ୍ଥ ପକାଇ ଦୁଇଭାଗ କରା ଯାଇଥିବା ଘରଟିର ଗୋଟିଏ ପଟେ ସେ ରହିଲେ ଓ ଅନ୍ୟ ଭାଗଟିରେ ରହୁଥିଲେ ଘର ମାଲିକ, ତାଙ୍କ ସ୍ତ୍ରୀ, ବୁଢ଼ୀମା ଓ ଅଧଡ଼ଜନ ଛୁଆ । ଶାଶୁ ବୋହୂରେ ପ୍ରାୟ ପ୍ରତିଦିନ ଉଚ୍ଚବାଚ ଲାଗିରହିଥାଏ । ତାଙ୍କୁ ସହ୍ୟ ହେଉଥିଲା । କିନ୍ତୁ ଦିନେଦିନେ ସବୁ ଛୁଆ ମିଳିମିଶି ଏପରି ଝଗଡ଼ା, କୋଳାହଳ, ମାରପିଟ, ଧୂମ୍‌ଧାମ୍ କରନ୍ତି ଯେ ସାର୍‌ଙ୍କୁ ଭାରି ଅସ୍ତବ୍ୟସ୍ତ ଲାଗେ । ସେଦିନ ପିଲାଙ୍କର ଗଣ୍ଡଗୋଳ ବେଶ୍ ଅଧିକ ଉତ୍କଟ ହେଲା । ଦୁମ୍‌ଦାମ୍ ଶବ୍ଦ ଶୁଭିଲା ଓ ପରେ ପରେ ଏକ ସମୟରେ ତିନି ଚାରିଜଣ

ପିଲା ସମସ୍ୱରରେ ବଲୁଆ ରଡ଼ିବା ପରି କାନଫଟା କାନ୍ଦଣା ଲହରି ଛୁଟାଇଲେ । ମହାପାତ୍ର ସାର୍ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେଦିନ ସେ ପ୍ରଥମ ଥର ପାଇଁ ଘର ମାଲିକର ଦରଜା ପର୍ଯ୍ୟନ୍ତ ଗଲେ । ସେ ଦେଖିଲେ, କାନ୍ଦିଲା ପିଲା ଠିଆହୋଇ ଆଖି ମଳି କାନ୍ଦୁଛନ୍ତି ଓ ଯେଉଁମାନେ କାନ୍ଦୁ ନଥିଲେ, ଘର ମାଲିକ ଓ ତାଙ୍କ ସ୍ତ୍ରୀ ସେମାନଙ୍କୁ ଲାତ, ଗୋଇଠା ମାରିବାରେ ବ୍ୟସ୍ତଥିଲେ ।

ମହାପାତ୍ର ସାର୍ ଚିତ୍କାର କଲେ : କଣ ଚାଲିଛି ଏସବୁ ?

ସମସ୍ତେ ସ୍ତବ୍ଧ, ନିଶ୍ଚଳ, ନୀରବ ହୋଇଗଲେ । ମହାପାତ୍ର ସାର୍ ଆକ୍ଷେପ କଲାଭଳି କହିଲେ : ଅନୁଶାସନ ନଥିବାରୁ ଏ ପିଲାମାନେ ଏମିତି ହେଉଛନ୍ତି ସିନା !

ମାଲିକାଣୀ ତାଙ୍କ ସ୍ୱାମୀଙ୍କୁ ପଚାରିଲେ : ଆମର କଣ ନାହିଁ ବୋଲି ଇଏ କହୁଛନ୍ତି ? ଘରମାଲିକ ସ୍ତ୍ରୀଙ୍କୁ ଆଡ଼େଇ ଦେଇ ଆଗେଇ ଆସିଲେ ଓ କହିଲେ : ଅନୁଶାସନ କଥା କଣ କହୁଛନ୍ତି ଆଜ୍ଞା, ଆପଣଙ୍କର ଛୁଆପିଲା ଥିଲେ ଜାଣିଥାନ୍ତେ, ଏମାନଙ୍କ ପାଖରେ କୌଣସି ଅନୁଶାସନ କି କଡ଼ା ଶାସନ ବିଲ୍‌କୁଲ୍ କାମ ଦିଏନାହିଁ ।

ମହାପାତ୍ର ସାର୍ ଯଥେଷ୍ଟ କ୍ଷୁବ୍ଧ ହୋଇଥିବା ପରି ଦିଶିଲେ । ସେ କହିଲେ, କାମ ଦେଇଥାନ୍ତା, ଯଦି ଗୋଟିଏ କି ଦୁଇଟି ହୋଇଥାନ୍ତେ । ଶାସନ କରିପାରିବେନି ଯଦି, ଗଣ୍ଡିଏ ହେବ ପିଲା ଜନ୍ମ କରୁଥିଲେ କାହିଁକି ?

ଘର ମାଲିକଙ୍କ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କଠାରୁ ଉତ୍ତର ଦାବି କଲେ : ପିଲା ଜନ୍ମ କରିବା ଆମର ଦୋଷ ନା ଏଭଳି ଲୋକଙ୍କୁ ଘର ଭଡ଼ା ଦେବା ? ଇଏ ଆମ ଘରେ ରହୁଛି, ନା ଆମେ ୟା'ର ବାଡ଼ିତଳେ ଘର କରିଛୁ ? ନା, ଆମର କୋଉ ପିଲା ଏବେ କଲେଜରେ ପଢ଼ୁଛି ଯେ, ଏକଥା ଶୁଣିବା ପରେ ମଧ୍ୟ ଆମେ ୟା'କୁ ଆମ ଘରେ ରଖିବୁ; ଉଠିକ ରହିବୁ ?

ତା’ ପରଦିନ ମହାପାତ୍ର ସାର୍ ସମସ୍ତ ଜିନିଷପତ୍ର ଧରି ଅଧ୍ୟାପକ ସାମଲଙ୍କ ଘରକୁ ଉଠିଗଲେ । ଅଧ୍ୟାପକ ସାମଲ କଲେଜରେ ଓଡ଼ିଆ ପଢ଼ାନ୍ତି । ତାଙ୍କର ଭଡ଼ା ଘରଟି ତାଙ୍କ ପରିବାର ପାଇଁ ଖୁବ୍ ପ୍ରଶସ୍ତ ଥିଲା । ସେ ତାଙ୍କର ବାହ ଘରଟି ମହାପାତ୍ର ସାର୍‌ଙ୍କ ପାଇଁ ଛାଡ଼ିଦେଲେ ।

କିଛିଦିନ ଭଲରେ ବିତିଗଲା । ମହାପାତ୍ର ସାର୍ ସେଦିନ ସକାଳୁ ସକାଳୁ ଧ୍ୟାନମଗ୍ନ ହୋଇ ପଢ଼ାପଢ଼ିରେ ବ୍ୟସ୍ତ ଥାଆନ୍ତି । ଅଧ୍ୟାପକ ସାମଲଙ୍କର ପୁଅ ଦୁଇଟି ସ୍କୁଲ୍‌କୁ ଯିବାପାଇଁ ବାହଘର ଦେଇ ବାହାରକୁ ଯାଉଯାଉ ଖୁବ୍ ଯୋରରେ ହସାହସି ହେଲେ । ତାହା ଶୁଣି, ବହି ଉପରୁ ମୁଣ୍ଡ ଉଠାଇ ମହାପାତ୍ର ସାର୍ ଏପରି ଏକ ରଡ଼ି ଛାଡ଼ିଲେ ଯେ ପିଲା ଦୁଇଟି ଭୟରେ ଫେରିଯାଇ ସେମାନଙ୍କ ମା’ର ପିଠିପଟେ ଲୁଚିଗଲେ ।

ସେହିଦିନ ସନ୍ଧ୍ୟାବେଳକୁ ମହାପାତ୍ର ସାର୍ ଗୋଟିଏ ଲଜ୍‌କୁ ଚାଲିଗଲେ । କିନ୍ତୁ ତା’ ପରଠାରୁ ସାମଲ ସାର୍ ଯେମିତି କି ତାଙ୍କର ଶତ୍ରୁ ପାଲଟି ଗଲେ । ସେ ହିଁ ପ୍ରଚାର କଲେ ତାଙ୍କର ପୂର୍ବ ଭଡ଼ାଘର ଛାଡ଼ିବାର କାହାଣୀ । ସେ ହିଁ ପ୍ରଚାର କଲେ, ପିଲାଙ୍କର କାନ୍ଦ ଓ ହସ ତାଙ୍କର ଦେହରେ ଯାଏନା । ସେ ହିଁ ଘୋଷଣା କଲେ, ଡକ୍ଟର ମହାପାତ୍ର ଜଣେ ଉଚ୍ଚ ରକ୍ତଚାପ ରୋଗୀ ଓ ବାୟା ପାଗଳ ।

ଅଚ୍ଛା, ପରିହାସ କରି ସମସ୍ତେ ଆନନ୍ଦ ଲଭିବାକୁ ଚାହିଁଲେ; ମଜା ପାଇଲେ । କେହିବି ଘଟଣାକୁ ତଳେଇ ଦେଖିଲେ ନାହିଁ । ମହାପାତ୍ର ସାର୍‌ଙ୍କୁ କିଏ ଦେଖିବା ମାତ୍ରେ କୁଆଁ କୁଆଁ କାନ୍ଦିଲା ତ କିଏ ଫେଁ ଫେଁ ହସିଲା । ଅରବିନ୍ଦର ବିଦ୍ରୋହ କରିବାକୁ ଇଚ୍ଛା ହୁଏ । ଠିକଏ ଠିକଏ ବ୍ୟକ୍ତିକ୍ରମ କାହାଠାରେ ଦେଖିବା କ୍ଷଣି ତାକୁ ଖୁବ୍ ସହଜରେ ଓ ଦାୟିତ୍ୱହୀନଭାବେ ଏମିତି ଉପହାସ କରାଯାଇ ପାରିବ ? ଏମିତି କିଛି ଜରୁରୀ ଅଛି କି ଯେ ସମସ୍ତେ ସେଇ ପ୍ରଚଳିତ ଶଗଡ଼ ଗୁଳାର ଜୀବନ ବଞ୍ଚି ଚାଲିଥିବେ ? ସମସ୍ତେ ଗୋଟିଏ ନିର୍ଦ୍ଦିଷ୍ଟ କମ୍ପାନୀର ତେଲ ବ୍ୟବହାର କରିବେ, ସାବୁନ ମାଖିବେ ? ସମସ୍ତେ ପିନ୍ଧିବେ ଗୋଟିଏ ୟୁନିଫର୍ମର ପୋଷାକ, ଗୋଟିଏ ଦେବତାକୁ ପୂଜା କରିବେ ଓ ଗୋଟିଏ ହିଁ

ରାଜନୈତିକ ଦଳକୁ ଭୋଟ ଦେବେ ? ଏମିତି କିଛି ଜରୁରୀ ଅଛି କି ଯେ ସମସ୍ତଙ୍କୁ ସବୁ ଅବସ୍ଥାରେ ଭଲ ଲାଗିବ କୋଇଲର କୁହୁତାନ ଏବଂ କାଉ କାହାପାଇଁ କି କିଛି ବାର୍ତ୍ତା ଆଣିବ ନାହିଁ ? ସମସ୍ତେ କେବଳ ବାହାହୋଇ ଗଣ୍ଡାଗଣ୍ଡା ସନ୍ତାନ ଉତ୍ପାଦନ କରିବାରେ ଲାଗିବେ ଓ ଶିଶୁଖାଦ୍ୟର ଉତ୍ପାଦନ ବଢ଼ାଇବା ପାଇଁ କେହି କି ମୂହୂର୍ତ୍ତେ ସୁଦ୍ଧା ଚିନ୍ତା କରିବେ ନାହିଁ ? ସବୁ ଶିଶୁ ହୃଷ୍ଟପୁଷ୍ଟ ଶରୀର ଧାରଣ କରି ଭୂମିଷ୍ଠ ହେବେ ଏବଂ ସମସ୍ତେ ଆଜୀବନ କ୍ଷୀର, ମହୁ, ଦୁଧ, ଫଳଉ ଖାଇ ଈଶ୍ୱରଙ୍କ କି ଜୟଗାନ କରିବେ ?

## ଅରବିନ୍ଦର ବିଦ୍ରୋହ କରିବାକୁ ଇଚ୍ଛା ହୁଏ ।

କିନ୍ତୁ ସବୁକିଛି ଗୋଟିଏ ପ୍ରଚଳିତ ଧାରାରେ ଚାଲିଥାଏ ! ଅଧିକାଂଶ ଲୋକଙ୍କର ଧାରା ଏବଂ ପନ୍ଥା । ଅଧିକାଂଶ ଲୋକ ସହରାଭିମୁଖୀ ହେଉଥିବାରୁ ଅନ୍ୟଜଣେ ଗ୍ରାମବାସୀ ସହରକୁ ଆସେ । ଅଧିକାଂଶ ଲୋକ ଚାକିରି କରୁଥିବା ମଣିଷମାନଙ୍କୁ ଭାଗ୍ୟବାନ୍ ବୋଲି କହି ବିଶେଷ ମହତ୍ତ୍ୱ ଦେଉଥିବାରୁ, ଚାକିରି ହିଁ ଶ୍ରେଷ୍ଠ ପେଶା ହୁଏ । ଅଧିକାଂଶ ଲୋକ ବସ୍ତୁର ଦାସ ପାଲଟନ୍ତି, ଗାଡ଼ି ଚଢ଼ନ୍ତି; ଉକାରଟିଏ କି ବସ୍ତୁବାସୀ ହେବାକୁ, ଗାଡ଼ି ଚଢ଼ିବାକୁ ସ୍ୱପ୍ନ ଦେଖେ । ଅଧିକାଂଶ ଲୋକ ବୁଢ଼ା ବାପା, ବୁଢ଼ୀ ମା'କୁ ଦୂରେଇ ଦିଅନ୍ତି, ଅନ୍ୟ ଜଣେ ମଧ୍ୟ ସମୃଦ୍ଧି ପାଇଁ, ସୋସାଇଟି ସହ ତାଳମିଳାଇ ଚାଲିବା ପାଇଁ ପୁରୁଣା, କଚରା ହଟାଇବା ଭଳି ବାପା, ମା, ଭାଇ, ଭଉଣୀଙ୍କୁ ଦୂରକୁ ଠେଲିଦିଏ । ଅଧିକାଂଶ ଲୋକ ବାବା ନିରାନନ୍ଦଙ୍କର ଶିଷ୍ୟ ହୋଇଥିବାରୁ ଆଉଜଣେ ଆସି ଭଜନ ମଣ୍ଡଳୀରେ ସାମିଲ୍ ହୋଇଯାଏ । ଅଧିକାଂଶ ଲୋକ ଚୋରି କରି ବଡ଼ଲୋକ ହୁଅନ୍ତି । ତେଣୁ ଆଉଜଣେ ଚୌର୍ଯ୍ୟବିଦ୍ୟା ଶିଖେ ।

ମହାପାତ୍ର ସାର୍ ଅଧିକାଂଶ ଲୋକଙ୍କ ଭିତରେ ନଥାନ୍ତି । ଅପଦସ୍ଥ ହୋଇ ସୁଦ୍ଧା ସେ ସାମାନ୍ୟ ପ୍ରତିବାଦ କି କରନ୍ତି ନାହିଁ । ବରଂ ଅଧିକ ବିଚ୍ଛିନ୍ନ, ଅଧିକ ଚୁପ୍‌ଚାପ୍, ଅଧିକ ଆତ୍ମମଗ୍ନ ଓ ଅଧିକ ନିରାସକ୍ତ ହୋଇ ପଡ଼ୁଥାନ୍ତି ।

ଅରବନ୍ଦର ବଦ୍ରୋହ କରବାକୁ ଇଚ୍ଛା ହୁଏ । ସମସ୍ତେ ଗଡ଼ୁଗଡ଼ୁ ଉଠନ୍ତି ।

ଜାନୁଆରୀ ମାସ ଆରମ୍ଭ ବେଳକୁ ଘଟିଲା ଏକ ବଚିତ୍ର ଘଟଣା । ଅଶ୍ଚର୍ଯ୍ୟ ଓ ମହାପାତ୍ର ସାର୍‌ଙ୍କ ପାଇଁ ଅତ୍ୟନ୍ତ ଦାରୁଣ । କଛୁଦନ ପୂର୍ବରୁ, କୁଆଡୁ କେଜାଣି, ସହରକୁ ଆସିଯାଇଥିଲା ଏକ ଅଦ୍ଭୁତ ମଣିଷ । ସେ ସହରସାରା ମାରବରେ ଏକମୁହାଁ ଘୂରି ବୁଲୁଥିଲା । ତା'ର ଗତବଧି ଓ ଆଚରଣରୁ ସେ ଜଣେ ସ୍ୱାଭାବକ ଲୋକ ଭଳି ଲାଗୁନଥିଲା । ଅତ ଆଶ୍ଚର୍ଯ୍ୟଜନକ ଭାବେ ସେଇ ଲୋକଟିର ଚେହେରା ମହାପାତ୍ର ସାର୍‌ଙ୍କ ଚେହେରା ସହ ବଲ୍‌କୁଲ୍ ମିଶି ଯାଉଥିଲା । ତାକୁ ଯିଏ ଦେଖି ଆସୁଥିଲା, ଅନ୍ୟମାନଙ୍କୁ ପଚାରୁଥିଲା, ମହାପାତ୍ର ସାର୍‌ଙ୍କ ଭାଇକୁ ଦେଖିଲଣି ? ସ୍ୱାଙ୍କଠାରୁ ବ ବଡ଼ ପାଗଳଭଳି ଜଣାପଡ଼ୁଛି । ବଚରା ଏକଲା କୋଉଠି ବା ରହନ୍ତା ? ଭାଇକୁ ଖୋଜଖୋଜ ଏଠାକୁ ଚାଲି ଆସିଛି ।

ଜାନୁଆରୀ ମାସର ଆରମ୍ଭ ସମୟ । ମଜ୍ଜା ଥରା ଶୀତ ପଡ଼ୁଥାଏ । ଲୋକଟି ଦନରାତ ଘୋଡ଼େଇ ହେଇ ବୁଲୁଥାଏ ଗୋଟିଏ କଳାରଙ୍ଗର ଚଦର । ସେଇ ଚଦରଟିରେ କେହି କୌତୁକ ପ୍ରେମୀ ଲୋକ ମଉକା ଦେଖି ଧଳାରଙ୍ଗ ଓ ତୁଳୀରେ ଲେଖିଦେଲା ଦୁଇଟି ବଡ଼ ଅକ୍ଷର : ହୁପ୍ । ଦନେ ସକାଳେ ଲୋକଟି ଏପରି ଭାବରେ ଚଦରଟି ଘୋଡ଼େଇ ହେଇ ରାସ୍ତାରେ ବୁଲଲା ଯେ, ଲୋକମାନେ ତା' ପିଠିପଟୁ ପଢ଼ିଲେ : ହୁପ୍ । ଅଳ୍ପ କେତୋଟି ଦନ ମଧ୍ୟରେ ଚାରିଆଡ଼େ ଶୁଭିଲା ହୁପ୍···ହୁପ୍ । ଏପରିକ ଯିଏ ଯାହାକୁ ଦେଖିଲା କହଲା, ହୁପ୍ । କଏ ଜଣେ ବ୍ୟସ୍ତରେ କୁଆଡ଼େ ଯାଉଥିବା ଦେଖିଲେ ଅନ୍ୟଜଣେ ଚିତ୍କାର କଲା, ହୁପ୍ । କଏ କାହାକୁ ଗାଳି କଲେ, ଗାଳି ଶୁଣୁଥିବା ଲୋକ ଅବଜ୍ଞା, ବେଖାତର କଲା, ହୁପ୍ । ରାସ୍ତା ଉପରେ ଷଣ୍ଢ ଲଢ଼େଇ ହେଲେ ଦଳେ ଲୋକ ଭଡ଼ କରି, ତାଳି ବଜାଇ ଉଲ୍ଲାସମୟ ଚିତ୍କାର କଲେ, ହୁପ୍···ହୁପ୍ । ଅଜ୍ଞାତ ଲୋକଟିର ନାଁ ହେଇଗଲା ହୁପ୍ ଓ ଏହାର ଦାରୁଣ ଦସ୍ତୁମାସ୍ତ ପ୍ରଭାବ କଲେଜ ପରସରରେ, ଡକ୍ଟର ମହାପାତ୍ରଙ୍କ ଉପରେ ପଡ଼ିଲା । ତାଙ୍କୁ ଦେଖି କଲେଜ ଭିତରେ ପିଲାମାନେ କୋଣ ବାଡ଼ରେ ଛପିରହ ଉଚାରଣ

କଲେ : ହୁପ୍ । ଦିନକୁ ଦିନ ଉପଦ୍ରବ ଓ ନିର୍ଲଜ୍ଜତା ବଢ଼ି ଚାଲିଲା । ସାର୍‌ଙ୍କର ପଛପଟୁ ଅନ୍ତ ପାଖରୁ ପିଲାମାନେ ଅତର୍କିତ ରଡ଼ି କଲେ, ହୁପ୍, ହୁପ୍ ।

ଅରବିନ୍ଦକୁ ଅଣନିଃଶ୍ୱାସୀ ଲାଗେ । ସେ ପିଲାଙ୍କୁ ଭର୍ତ୍ସନା କରେ ।

ମହାପାତ୍ର ସାର୍ ଆଉ ସହିପାରିଲେ ନାହିଁ । ଭୋ' ଭୋ' କାନ୍ଦି ପକାଇଲେ । ଅଧ୍ୟକ୍ଷଙ୍କ ସାମନାରେ ଝରଝର କାନ୍ଦି ସେ ଅନୁରୋଧ କଲେ, ସାର୍, ମୋର ଏଠୁ ବଦଳି କରେଇ ଦିଅନ୍ତୁ । ବଦଳି ହେବା ଯାଏ ମୁଁ ଆଉ କଲେଜକୁ ଆସିପାରିବି ନାହିଁ, ମତେ ଅନିର୍ଦ୍ଦିଷ୍ଟ କାଳ ଯାଏ ଛୁଟି ଦିଅନ୍ତୁ ।

ମହାପାତ୍ର ସାର୍ ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରୁ ବାହାରି ଏକମୁହାଁ ଲଜ୍‌କୁ ଚାଲିଗଲେ । ଲଜ୍‌ରେ ଭଡ଼ା ନେଇଥିବା ରୁମ୍‌ରୁ ଆଉ ବାହାରିଲେ ନାହିଁ ।

ଅରବିନ୍ଦ ତାଙ୍କୁ ଲଜ୍‌ରେ ଯାଇ ଭେଟିଲା । ଉଦାସ ସ୍ୱରରେ କହିଲା, ସାର୍, ଆପଣ ଥୋଡ଼େ ମୂର୍ଖ, ଅସଭ୍ୟ ଲୋକଙ୍କ ଉପରେ ଅଭିମାନ କରି ନିଜକୁ ଅନ୍ଧାର ଭିତରେ ହଜାଇ ଦିଅନ୍ତୁ ନାହିଁ; ଚାଲିଯାଆନ୍ତୁ ନାହିଁ । ଆପଣ କଲେଜକୁ ଆସନ୍ତୁ । ମୁଁ ଆପଣଙ୍କ ପାଇଁ ଲଢ଼େଇ କରୁଛି ଓ କରିବି ।

ମହାପାତ୍ର ସାର୍ କହିଲେ : ମୁଁ କାହା ଉପରେ ଅଭିମାନ କରିବି ? ଅଭିଶପ୍ତ ମଣିଷଙ୍କ ଉପରେ ? ତମେ ମୋ ପାଇଁ କାହିଁକି ଲଢ଼ିବ ? କାହା କାହା ପାଇଁ ଲଢ଼ିବ ତମେ ? ଏତେ ସମୟ କାହିଁ ? ଜନ୍ମ ହେବା ଓ ମରିଯିବା ଯେତେ ସହଜ, ବଞ୍ଚିରହିବା ସେତେ ସହଜ ନୁହେଁ ଅରବିନ୍ଦ । ମୁଁ ତଥାପି ବଞ୍ଚିରହିବି; ଅଲବତ । ତମେ ଯାଅ । ନିଜକୁ ବଞ୍ଚାଇ ରଖିବାକୁ ଲଢ଼େଇ କର । ମୋ କଥା ଛାଡ଼ । ମତେ ଏବେ ଏକାକୀ ରହିବାକୁ ଦିଅ । ମତେ ଏକା ଛାଡ଼ିଦିଅ । ମୁଁ ତୁମଠାରେ କୃତଜ୍ଞ ।

●

# ସମୟର ରେଳଗାଡ଼ି

କୌଣସି ମଣିଷ କି କଣ ସବୁ ସମୟରେ ନିଜ ଭିତରେ ଥାଏ କି ? ଥାଏ କି ନିଜ ମନ, ଚେତନା, ପଞ୍ଚେନ୍ଦ୍ରିୟ ବା ପଞ୍ଚ ମହାଭୂତର ଶରୀର ଭିତରେ ? ନା, ନଥାଏ । କେତେବେଳେ ନିଜଠାରୁ ଦୂରେଇ ଯାଏ । ପୁଣି କେତେବେଳେ ଫେରି ଆସୁଥାଏ । ଏଭଳି ଏକ ଖେଳ ବରାବର ଚାଲୁ ରହିଥାଏ । ମଣିଷର ନିଜତ୍ୱ ବୋଲି କିଛିଗୋଟେ ଥାଏ କି ? ମଣିଷର ତ ନିଜର ବୋଲି କିଛି ହିଁ ନାହିଁ, ପୁଣି କେଉଁଠି ତେବେ ଥାଏ ତା' ନିଜତ୍ୱ ? ମୁଁ ଜାଣେନା ।

ସେ ଏକ ବିଚିତ୍ର କଥା । ମୋର ଏକଦା ରେଳଯାତ୍ରା ସମ୍ପର୍କରେ କହୁଛି । ସକାଳ ସମୟରୁ ହିଁ ମୁଁ ରେଳରେ ବସିଥାଏ । ମୁଁ ରେଳରେ ବସିଲି ଓ ସୂର୍ଯ୍ୟୋଦୟ ହେଲା । ଅଥବା ମୋର ରେଳରେ ବସିବା ଏବଂ ସୂର୍ଯ୍ୟୋଦୟ ହେବା ଗୋଟିଏ ମୁହୂର୍ତ୍ତର କଥା । ବହୁଦୂର ପଥ ମତେ ଅତିକ୍ରମ କରିବାକୁ ହେବ ।

ଏକଥା ତ ସମସ୍ତେ ଜାଣନ୍ତି, ଯିଏ ସୁନା, ରୂପା, ହୀରା, ନୀଳା, ମୋତି, ମାଣିକ୍ୟ, ବୈଦୁର୍ଯ୍ୟ ଆଦି ପାଖରେ ରଖି ନିୟମିତ ଭାବେ ସେ ସବୁ ଦେଖି ଆନନ୍ଦ ଲାଭ କରିବାର ସୁଯୋଗ ହାସଲ କରିପାରେ ନାହିଁ ସେ ପ୍ରକୃତି, ଗଛଲତା, ପାହାଡ଼, ଝରଣା ଇତ୍ୟାଦି ଦେଖି ଆତ୍ମହରା ହୁଏ । ମୋର ସାଇଡ୍ ସିଟ୍ ଥିଲା । ଅନ୍ୟାନ୍ୟ ସହଯାତ୍ରୀମାନେ ହୁଏତ ମୋ

ସହ ଗପସପ କରିବା ପାଇଁ ଆଗ୍ରହୀ ଥିଲେ ଅଥବା ତାସ୍ ଖେଳିବାକୁ ।
ମୁଁ ଯଦି ନିର୍ନିମେଷ ନୟନରେ ଦ୍ରୁତ ଧାବମାନ ବାହ୍ୟ ଜଗତକୁ ଲକ୍ଷ୍ୟ କରେ, ସେମାନଙ୍କର ଆପତ୍ତି କରିବା ଭଳି କିଛି ଥାଇପାରେ କି ? ନା, ନଥିଲା । କେହି ମତେ ନିବୃତ୍ତ କରିବାର ଚେଷ୍ଟା କରି ବି ନଥିଲେ !

ରେଳ ବେଶ୍ ଗତିଶୀଳ । ବେଳେବେଳେ କୌଣସି ନିର୍ଦ୍ଦିଷ୍ଟ ଦୃଶ୍ୟ, ଅଦୃଷ୍ଟପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ଆଖିରେ ପଡ଼ିବା ମାତ୍ରେ ମୁଁ ଯେମିତି ଅଟକି ଯାଉଥିଲି । ସେ ଦୃଶ୍ୟକୁ କାହିଁ କେତେ ପଛରେ ପକାଇ, ହୁଏତ ଆହୁରି ଅଧିକ ଚମତ୍କାର ଦୃଶ୍ୟ ମଧ୍ୟ ଦେଇ, ରେଳ ଦୂରକୁ ଦୂରକୁ ଚାଲିଥିଲା । ନୂଆ ଦୃଶ୍ୟ ସବୁ ମୋ ଆଖିରେ ପଡ଼ୁଥିଲା ମଧ୍ୟ । ଅଥଚ ମୁଁ ଯେମିତି କିଛି ହିଁ ଦେଖି ପାରୁନଥିଲି । କେଉଁଠି ଗୋଟେ ଅଟକି ରହିଯାଇଥିଲି । ସଚେତନ ହୋଇ ନିଜକୁ ଫେରାଇ ଆଣିବା ଯେମିତି କି ନିଜ ଅକ୍ତିଆର ବାହାରର କଥା ।

ମଣିଷ କଣ ସବୁ ସମୟରେ ନିଜ ଭିତରେ ଥାଏ ? ନା, ନଥାଏ । କେଉଁଠି କେତେବେଳେ ସେ ନିଜକୁ ହଜାଇଦିଏ ବା ହଜିଯାଏ । କେଉଁଠି କେତେବେଳେ ସେ ଅଟକି ଯାଏ ବା ନିଜକୁ ଛାଡ଼ିଦେଇ ଆସେ ।

ମୁଁ ବି କଣ ସେମିତି କରିନାହିଁ କି ? ଯୁବା ବୟସ । ଉଚ୍ଚ ଶିକ୍ଷିତ । ସେଥିରେ ପୁଣି ଥାଏ ବେକାର । ସ୍ମୃତିକୁ ଭଲପାଇଲି । ପୂର୍ବରୁ ସମୟ କଟୁନଥିଲା । ଚିଠି ଲେଖିବାରେ ବିତିଗଲା ଖୁବ୍ ପୋଖତ । ଚିଠି ଲେଖି ଓ ଚିଠିକୁ ଅପେକ୍ଷା କରି ସମୟ କଟାଏ । ତିନିଶହ କିଲୋମିଟର ଦୂରରୁ ସ୍ମୃତି ଲେଖେ ସେ ମୋ ପାଖରେ ଅଛି । ମୁଁ ଉତ୍ତର ଦିଏ, ମୁଁ ବି କଣ ମୋ ଭିତରେ ଆଉ ଅଛି କି ?

ରେଳ ଯେଉଁଠି ବି ଅଟକୁ ମୁଁ ଓହ୍ଲାଉ ନଥିଲି । ସେ ଭଲଥିଲା । କିନ୍ତୁ ସ୍ମୃତିର ସହରରେ ଗାଡ଼ି ରହିବା କ୍ଷଣି ମୁଁ ତଳକୁ ଓହ୍ଲାଇ ପଡ଼ିଲି । ସେତେବେଳକୁ ପାଖାପାଖି ମଧ୍ୟାହ୍ନ । ସ୍ମୃତିକୁ ଖବର ଦେଇଥିଲି ମୁଁ ସେଇ ରେଳରେ ଆସୁଛି । ପ୍ଲାଟ୍‌ଫର୍ମରେ ତା' ସହ ମୋର ଦେଖା

ହେବା କଥା । କିନ୍ତୁ ନାରୀ ସ୍ୱାଧୀନତା ଓ ନାରୀର ଅଧିକାର ଉପରେ ଯେତେ ପାଟିଭୁଣ୍ଡ ହେଲେ ସୁଦ୍ଧା ଏବେ ବି କଣ ଯେ କେହି ଝିଅ ଯେତେବେଳେ ଇଚ୍ଛା ଷ୍ଟେସନ୍‌କୁ ଏକାଏକା ଆସି ଯାଇପାରେ ? ସେ ଆସିନଥିଲା ।

ପୃଥିବୀରେ/ ବ୍ୟବସ୍ଥାରେ କୌଣସି କଥା କି ମଣିଷର ଇଚ୍ଛାର ଆୟତ୍ତ କି ? ମୋର ତ ଇଚ୍ଛାଥିଲା ମୁଁ ଯେପର୍ଯ୍ୟନ୍ତ ସେଇଠି ରହିବାକୁ ଚାହିଁବି, ରେଳ ମଧ୍ୟ ସେତେବେଳ ଯାଏ ଅଟକି ରହୁ । କାଳେ ସ୍ମୃତି ଆସୁଥିବ ! ରେଳ ହୁଏତ ଠିକ୍ ସମୟରେ ପହଞ୍ଚି ଯାଇଛି । ବିଳମ୍ବ ନିଶ୍ଚୟ ଥିବ ରେଳ ଆସିବାରେ ବୋଲି ଭାବିଦେଇ ସେ କାଳେ ଡେରିରେ ଘରୁ ବାହାରି ଥିବ । ତା' ସହିତ ଥରେ ଖାଲି ସାକ୍ଷାତ ହୋଇଗଲେ ମୁଁ ଅନାୟାସରେ ବର୍ଷଟିଏ ବଞ୍ଚିବାର ଉତ୍ସାହ ପାଇଯିବି । ଏତେ ବଡ଼ କଥା ପାଇଁ ରେଳଗାଡ଼ି କିଛି ସମୟ ଅଟକି ରହିବା କଣ ବା ଏମିତି ବଡ଼ ଭାରି ଅସମ୍ଭବ ବିଷୟ ? ଆବଶ୍ୟକ ହେଲେ ସମୟ ବି ତ ଅଟକି ଯାଉଛି କେଉଁଠି । କଲେଜରେ ଆମେ ଏକ ଇଂଲିଶ୍ କବିତା ପଢ଼ିଥିଲୁ । କବିତାର ଶୀର୍ଷକ ଥିଲା : ସମୟ ! ତୁମେ ଜଣେ ବୃଦ୍ଧ ଯାଯାବର । ସେଇ ବୃଦ୍ଧ ଯାଯାବରଟି ପରା କେବେ ଥରେ ଦୀର୍ଘକାଳ ପାଇଁ ଇଂଲଣ୍ଡ ଦେଶରେ ଅଟକି ଯାଇଥିଲା ଓ ଇଂଲିଶ୍ ଲୋକଙ୍କର/ ଜାତିର ପ୍ରଭୂତ ଉନ୍ନତି ସାଧନ କରିଥିଲା । ଅନ୍ୟ କେଉଁ କେଉଁ ଦେଶରେ ମଧ୍ୟ ଅଟକିଥିଲା, ମୋର ଏବେ ଆଉ ମନେ ପଡ଼ୁନି । ତେବେ ଭାରତରେ କେବେ ସ୍ଥିରଭାବେ ରହି ଯାଇଥିବା କଥା ଅବଶ୍ୟ କବିତାରେ ଉଲ୍ଲେଖ ନଥିଲା । ତଥାପି, ସମୟ ଯଦି କେଉଁଠି ନା କେଉଁଠି ଅଟକି ଯାଇ ପାରୁଛି, ଭାରତର ଏକ ସହରରେ ସ୍ଥିର ରେଳଗାଡ଼ିଟିଏ କିଛି ଅଧିକକ୍ଷଣ ଠିଆହୋଇ ରହିଯାଇ ପାରିବ ନାହିଁ ?

ନା, ରହିଲା ନାହିଁ । ପତାକା ହଲିଲା । ହ୍ୱିସିଲ୍ ବାଜିଲା । ଗାଡ଼ି ଚାଲିଲା । ମୁଁ ଅବଶ୍ୟ ଗାଡ଼ିରେ ଚଢ଼ିସାରିଥିଲି । ଗାଡ଼ିର ଗତି ବଢ଼ୁଥିଲା । ମତେ କିନ୍ତୁ ସନ୍ଦେହ ଲାଗିଲା, ମୁଁ ଯେ ତଳକୁ ଓହ୍ଲାଇଥିଲି, ପ୍ରକୃତରେ ପୁନର୍ବାର ଗାଡ଼ି ଭିତରକୁ ଆସିଲି ତ ? ମୁଁ ଆତଙ୍କିତ ହୋଇପଡ଼ିଲି ।

ମୁହୂର୍ତ୍ତେ । ସଚେତନ ହେଲି—ଏ କି ଅଦ୍ଭୁତ ଭାବନା ? ମୁଁ ତ ଅଛି । ହେଇ, ଅଛିତ, ରେଳ ଭିତରେ । ମୋର ସେଇ ସାଇଡ୍ ସିଟ୍‌ରେ । ବାହାରକୁ ମୁହଁ । ବାହାରେ ଦୃଶ୍ୟ ଦୃଶ୍ୟାନ୍ତର । ଗଛଲତା ଗ୍ରାମ ଓ ନଗର । ମୁଁ ତା'ହେଲେ ସଶରୀରେ ରେଳ ଭିତରେ । ଅଥଚ ମନେ ଲାଗୁଛି ମୁଁ ପୂର୍ବ ଷ୍ଟେସନରେ ଅଟକି ଯାଇଛି । ପ୍ଲାଟଫର୍ମର କେଉଁ କୋଣରେ ଏକାକୀ, ଅନାଥ ପରି ଠିଆ ହେଇଚି ! ବିଚିତ୍ର !

ତା' ପରେ ବି ଅନେକ ଷ୍ଟେସନ୍‌ରେ ଗାଡ଼ି ରହିଛି । ମୋର ସେଆଡ଼କୁ ନଜର ନାହିଁ । ପୁଣି ଏକ ଷ୍ଟେସନ୍‌ରେ ଗାଡ଼ି ରହିଲା । ଷ୍ଟେସନ୍‌ର ନାଁଟି ପଢ଼ିଲି । ସେତେବେଳକୁ ମଧ୍ୟାହ୍ନ ଅତିକ୍ରାନ୍ତ । ମନେପଡ଼ିଲା, ଷ୍ଟେସନରୁ ମାଇଲଏ ଦୂରରେ ମୋର ଜଣେ ବନ୍ଧୁର ଭଡ଼ାଘର । ପରିସ୍ଥିତି ପୂର୍ବଭଳି ଥିଲେ ମୁଁ ସେଇଠି ଓହ୍ଲାଇ ଦିନକ ପାଇଁ ରହିଯିବା ପାଇଁ ନିଷ୍ପତ୍ତି ନେଇଥାନ୍ତି—ଏତେ ଘନିଷ୍ଠ ବନ୍ଧୁ ସେ ଥିଲା ମୋର । ଅଥଚ ଗାଡ଼ିରୁ ତଳକୁ ଓହ୍ଲାଇଲି ବି ନାହିଁ । ସେ ମୋ ପାଖକୁ ଆଜିକାଲି ଚିଠି ଲେଖେନା । ଲେଖିବାର ନୈତିକ ସାହସ ହରାଇ ବସିଛି । ଏତେ ଅନ୍ତରଙ୍ଗ ବନ୍ଧୁ ଏପରି ସୁବିଧାବାଦୀ ହୋଇପାରେ ବୋଲି ମୁଁ କଳନା କରି ପାରିନଥିଲି ବୋଲି ତାକୁ ହରାଇବାକୁ ବାଧ୍ୟ ହେଲି । ପରିଚିତ ଦୋକାନୀଠାରୁ କିଛି ଜିନିଷ ଧାରରେ ନେଇ ରାତାରାତି ଛୁ'ମାରୁଥିବା ଲୋକଭଳି ମୋଠାରୁ ସେ ସାମାନ୍ୟ ଅର୍ଥ ହାସଲ କରିନେବା ପରେ ସମ୍ପର୍କ ତୁଟାଇ ଦେଲା । ମୁଁ ଜଣେ ଦୋକାନୀ ନୁହଁ । ବ୍ୟବସାୟ ପ୍ରତି ମୋର କେବେହେଁ ଆଗ୍ରହ ନଥିଲା । ତା' ପାଖକୁ ଚିଠି ଲେଖିଲି । ସେ ନୀରବ ରହିଲା ।ତାକୁ ମୁଁ ଜଣାଇ ଦେଲି ଯେ—ତା'ଠାରେ ଦୂରଦୃଷ୍ଟିର ଘୋର ଅଭାବ ରହିଛି । ଯଦି ମହତ୍ତ୍ୱାକାଂକ୍ଷୀ ହେବାରେ ହିଁ ତାର ଆଗ୍ରହ ଓ ସାର୍ଥକତା ତେବେ ମୋଠାରେ ତାର ଆହୁରି ଅନେକ ମତଲବ ଥିଲା । ମୋ ଠାରୁ ଆହୁରି ବଡ଼ ବଡ଼ ସ୍ୱାର୍ଥ ହାସଲ କରିବାର କ୍ଷେତ୍ର ତା'ପାଇଁ ପ୍ରଶସ୍ତ ଥିଲା । ଏବେ ମୁଁ ତାକୁ ବିଚରା ବୋଲି ଭାବୁଛି । ଅଳ୍ପକେ ସନ୍ତୁଷ୍ଟ ଓ ବନ୍ଧୁତା ଭଳି ମହାର୍ଘ ଚିଜ ବଦଳରେ ସାମାନ୍ୟ ସ୍ୱାର୍ଥ ହାସଲ କରିନେଇ ନିଃସଙ୍ଗ ପାଲଟି ଯାଉଥିବା ନିର୍ବୋଧଟିଏ ବୋଲି ମନେକରୁଛି ।

ଗାଡ଼ି ପୁଣି ଗ୍ଭଲିଲା ଓ ଚଟକେ ବାରହାତ ଯାଇଛି କି ନାହିଁ, ଅଟକିଗଲା । କୋଳାହଳ ଶୁଭିଲା । ଲୋକମାନେ ଖପ୍‌ଖାପ୍ ଗାଡ଼ି ବାହାରକୁ ଡେଇଁ ପଡ଼ିଲେ । ମୁଁ ଭାବିଲି ଡେକଂ ହେଲା କି ଆଉ ! ମୋ ପାଖରେ ଟିକେଟ ଥିଲା । ମୁଁ ବସିରହିଲି । କୋଳାହଳ ବଢ଼ିଲା ଘଟଣା ଅନ୍ୟକିଛି । ଅନୁପ୍ରାଣିତ ହୋଇ ଓହ୍ଲାଇଲି । ଜଣେ ଯୁବକ ରେଳଚକ ତଳେ ଆତ୍ମହତ୍ୟା କରିଥିଲା । ତା' ହାତମୁଠାରେ ଥିଲା ଖଣ୍ଡେ କାଗଜ । ସେ କାଗଜ ଖଣ୍ଡିକ ଉଦ୍ଧାର କରି ଜଣେ ପୋଲିସ୍ ଅଫିସର୍ ବଡ଼ ପାଟିରେ ପଢ଼ିଲେ : ମୋର ମୃତ୍ୟୁ ପାଇଁ ମୁଁ କାହାକୁ ବି ଦାୟୀ କରୁ ନାହିଁ । (କାହାର ମୃତ୍ୟୁ ପାଇଁ କେହି ପ୍ରକୃତରେ ଦାୟୀ ହୋଇପାରେ କି ? ପତ୍ନୀର ମୃତ୍ୟୁ ପାଇଁ ସ୍ୱାମୀ ? ଶିଶୁର ମୃତ୍ୟୁ ପାଇଁ ମା ? ସ୍କୁଲରେ ଛାତ୍ରର ମୃତ୍ୟୁ ପାଇଁ ଶିକ୍ଷକ ? ଅନାହାରରେ ବା ଅପମାନରେ ମରୁଥିବା ଲୋକପାଇଁ ସରକାର ? ରାଷ୍ଟ୍ର ନେତାଙ୍କ ମୃତ୍ୟୁପାଇଁ, ଆତତାୟୀ ? ଦେଶବାସୀ ? ଭଗବାନ ?) ମୁଁ ନିଜଠାରୁ ନିଜେ ସମ୍ପୂର୍ଣ୍ଣ ଭାବେ ହଜି-ଯାଇଥିବାରୁ ସ୍ୱେଚ୍ଛାରେ ଆତ୍ମହତ୍ୟା କରୁଛି ।

ମଣିଷର ସ୍ୱାଧୀନ ଇଚ୍ଛା ଆତ୍ମହତ୍ୟା ଛଡ଼ା ଆଉ କେଉଁ କେଉଁ ବାଟରେ ଚରିତାର୍ଥ ହେଉଥିବାର ଖବର କାହା ପାଖରେ ଅଛି କି ? ମୁଁ ଜାଣେନା । ମଣିଷ ନିଜଠାରୁ ନିଜେ କିପରି ସମ୍ପୂର୍ଣ୍ଣ ଭାବେ ହଜି ଯାଇପାରେ ? ମଣିଷଟିଏ କଣ ପ୍ରକୃତରେ ତା' ନିଜ ଭିତରେ ଥାଏ ? କେଉଁଠି ଥାଏ ମଣିଷଟିର ନିଜତ୍ୱ; ସେ ତା ଆଖି ଆଗରେ ଧର୍ଷିତା ହେଉଥିବା କୌଣସି ଅସହାୟକୁ ଦେଖିବା ବେଳେ ? ପୋଲିସ୍ ହାଜତରେ ନିରପରାଧ ମଣିଷ ପାହାର ସହି ନପାରି ମରୁଥିବା ବେଳେ ? ଡାକ୍ତରଖାନାରେ ଡାକ୍ତର, ନର୍ସ କି ଔଷଧ ପାଖରେ ନପାଇ ରୋଗୀଟିଏ କରୁଣ ଚିତ୍କାର କରୁଥିବା ବେଳେ ? ଜାତିଆଣ ଭିତ୍ତିରେ ଚାକିରି ବଣ୍ଟନ, ଧର୍ମଭିତ୍ତିରେ ରାଷ୍ଟ୍ରଗଠନ, କ୍ଷମତା ଅନୁଯାୟୀ ଯଥେଚ୍ଛା ଶୋଷଣର ଦୃଶ୍ୟ ସବୁ ପ୍ରତ୍ୟକ୍ଷ କରୁଥିବା ବେଳେ ? ମୁଁ ଜାଣେନା । ମୁଁ ରେଳ ଭିତରକୁ ମୋର ବସିବା ଜାଗାକୁ ଫେରି ଆସିଥିଲି । କେତେବେଳେ ରେଳ ପୁଣି ଗ୍ଭଲିବା ଆରମ୍ଭ କଲା ଜାଣିପାରିଲି ନାହିଁ । ହଁ, ଜାଣିପାରିଲି ନାହିଁ ।

କୌଣସି କାରଣ ଥାଇପାରେ । ହୁଏତ ଆଖିବୁଜି ଗଭୀର ଚିନ୍ତାରେ ମଗ୍ନ ଥିଲି ଅଥବା ମତେ ନିଦ ହୋଇଯାଇଥିଲା । ଏପରି ବି ହୋଇପାରେ; ମୋ ମୁଣ୍ଡକୁ ବଳକା ପ୍ରତିକୂଳ ପରିସ୍ଥିତି, ଅସହ୍ୟ ଘଟଣା ବା ପାଗର ବାଡ଼ିଜ୍ୱାଳାରେ ମୁଁ ଅଚେତନ ହୋଇ ପଡ଼ିଥିଲି ! ସଚେତନ ହେଲା ବେଳକୁ ଗାଡ଼ିର ଗତି ଦ୍ରୁତ । ପୂର୍ବାପେକ୍ଷା ଯଥେଷ୍ଟ ବେଶୀ । ଯୁବକଟିର ଆତ୍ମହତ୍ୟା ହେତୁ ବିଳମ୍ବ ଘଟିଥିବାରୁ ଗୃଳକ ମେକ୍-ଅପ୍ କରିବା ଚେଷ୍ଟାରେ ଥିବା ଅସମ୍ଭବ ନୁହେଁ । ଅନ୍ୟ ଏକ ଆଶଙ୍କା ବି ମୋ ମୁଣ୍ଡରେ ପଶିଲା । ଆଗକୁ କାଳେ କିଛି ବଡ଼ ଧରଣର ଦୁର୍ଘଟଣା ଘଟିବାକୁ ଅଛି ଯେ ଲିଭିବା ପୂର୍ବରୁ ଘାପଟିଏ ଦପ୍‌କରି ଜଳିବା ଭଳି ରେଳର ଗତି ଦ୍ରୁତତର ହେଉଛି ।

ନା, ସେପରି କିଛି ଘଟିଲା ନାହିଁ ଓ ମୋର ଗନ୍ତବ୍ୟ ସ୍ଥଳରେ ରେଳ ପହଞ୍ଚିଲା । ରେଳପାଇଁ ସେଠାରେ ଅପେକ୍ଷାରତ ଅଜସ୍ର ଯାତ୍ରୀ ଗାଡ଼ିରେ ଚଢ଼ିବା ବେଳେ ସେମାନଙ୍କର କି ଉତ୍ସାହ ! ଓହ୍ଲାଇବାକୁ ଓ ଗାଡ଼ି ଖାଲି କରିବାକୁ ଚାହୁଁଥିବା ଲୋକଙ୍କୁ ସୁଦ୍ଧା ସେମାନେ ବାଟ ଛାଡ଼ିବାକୁ ନାରାଜ । କୌଣସି ପ୍ରକାରେ ଠେଲାଠେଲି କରି ଓହ୍ଲାଇଗଲି ।

କିଏ ମୋର ପର୍ସ ମାରିଦେଲା । ଯାଃ ଶଳା : ଆଉକିଛି ମାରି ଦେବାକୁ କାହାର ତାକତ ଅଛି କି ? ପର୍ସଟା ମାରିଛି ତ । ମାରୁ ଶଳା । ଏତେଦିନ ହେଲା ମୁଁ ସଂସାରକୁ ଆସିଲିଣି ଓ ଅବେଳରେ ଗୃଲିଯିବାକୁ ବି ମନ ଡାକିଲାଣି, ମୁଁ କଣ ଏତେ ବେହୁସିଆର ହୋଇଛି ? ପର୍ସ ତା ଜାଗାରେ ସିନା ଥିଲା, ଟଙ୍କାପଇସା କିନ୍ତୁ ଭାଗଭାଗ ହୋଇ ଅନ୍ୟ ତିନୋଟି ପକେଟ୍‌ରେ । କିନ୍ତୁ ରେଳଟିକେଟ୍ ଖଣ୍ଡିକ ପର୍ସରେ ଥିଲା ଯେ ! ଭାରି ବିଷମ କଥା ହେଲା । ଲକ୍ଷ୍ୟସ୍ଥଳରେ ପହଞ୍ଚି ପ୍ଲାଟଫର୍ମ ବାହାରକୁ ଯାଇ-ପାରିବି ନାହିଁ ? କି ଦୁଃଖ !

ଛୋଟ ଛୋଟ କଥାରେ ବି ଅଧୈର୍ଯ୍ୟ ଓ ବିଚଳିତ ହୋଇପଡ଼ିବା ମୋର ପୁରୁଣା ଅଭ୍ୟାସ । ବିଚଳିତ ଲାଗିଲେ ସର୍ବଦା ଜୀବନ ପ୍ରତି, ପୃଥିବୀ ପ୍ରତି ମୋ ମନ ବିଦ୍ରୋହି ଉଠେ । ମୁଁ 'ଠୋ' ବୋଲି ଉଚ୍ଚାରଣ

କରିବ ଓ କେଉଁଠି କିଛୁ 'ଢୋ' କିନା ଫାଟି ସବୁକିଛୁ ଧ୍ୱଂସ ହୋଇ-ଯାଆନ୍ତା କି ? ଅନ୍ୟଥା ମୋର ବା ଦୋଷ କଣ ? ମୁଁ ଟିକେଟ୍ କରିଥିଲି । କିନ୍ତୁ ସେକଥା କିଏ ଧଳାପେଣ୍ଟ ଓ କଳାକୋଟ୍ ବିଶ୍ୱାସ କରିବ ? ତାହା ପିନ୍ଧିଥିବା ଲୋକଟି ତ ମୋଟେ ବିଶ୍ୱାସ କରିବ ନାହିଁ, ମୁଁ ଜାଣେ । ମୁଁ ହ୍ୱିସିଲ ମାରି ଦିଅନ୍ତି ଓ ସେ ଲୋକଟା ଆଖି ପିଚୁଳାକେ କୁଆଡ଼େ ଉଡ଼ିଯାଆନ୍ତା କି ? ଅଥବା ତା'ର ପୋଷାକପତ୍ର ସବୁ ଖୋଲିଯାଆନ୍ତା ଓ ସେ ଲୁଚିଯିବାକୁ ବାଟ ପାଆନ୍ତା ନାହିଁ । ଆହା ! କି ଗମ୍ଭୀର ବଦନ ରେ ! ମୁଁ ତା'ଠାରୁ କିଛିଦୂରରେ ଠିଆହେଲି ମାଗିଲି । ଗହଳି କମୁ, ଦେଖିବା । ନହେଲେ ନିଜକୁ ଭଗବାନ ମନେ କରି ତା'ର ପାଦ ଧରିଦେବା ।

ଗହଳି କମିବାକୁ ନାହିଁ । ଆଉ ଗୋଟେ ଗାଡ଼ି ଆସିଲା । ଲୋକ ଆସୁଛନ୍ତି; ଯାଉଛନ୍ତି । ଶିଝା ଅଣ୍ଡା ବିକୁଥିବା ଜଣେ ଲୋକଠାରୁ ମୁଁ ଦୁଇଟି ଅଣ୍ଡା କିଣିଲି । ଗୋଟିକ ପରେ ଅନ୍ୟଟି ପ୍ଲାଟ୍‌ଫର୍ମର ଦୁଇପୁଟ ବାଇ ଦୁଇପୁଟ ଖାଲି ଜାଗାରେ ପିଟି ଟୁକୁଡ଼ା ଟୁକୁଡ଼ା କରିଦେଲି । ଅନ୍ୟ ଏକ ଠେଲାବାଲାକୁ ଗୋଟିଏ କଦଳୀ ମାଗିଲି । ସେ କହିଲା, ଗୋଟେ କଣ, ଛଅଟା ନିଅ । ମୁଁ କହିଲି, ଏତେଗୁଡ଼େ କିଣିବାକୁ କି ଖାଇ ହଜମ କରିବାକୁ ପୌରୁଷ କାହିଁ ? ଶଳାଟା ବୁଝିଲାନି । ତା'ର ଖଇନି ଖିଆ ଦାନ୍ତ ଦେଖାଇ ଦେଲା । ମୁଁ କଦଳୀଟି ଧରି ପ୍ଲାଟଫର୍ମ କଡ଼କୁ ଗଲି । ଅଧଇଞ୍ଚେ, ଇଞ୍ଚେ କରି କଦଳୀଟିକୁ କାମୁଡ଼ିଲି ଓ ଖଣ୍ଡ ଗୁଡ଼ିକୁ ଫୁଙ୍ଗୁ କରି ରେଳଧାରଣା ଉପରକୁ ଫିଙ୍ଗିଲି । ସେତେବେଳକୁ ମୁଁ କେତେଜଣଙ୍କର ଦୃଷ୍ଟି ଆକର୍ଷଣ କରିସାରିଲିଣି । ରେଲୱେ ପୋଲିସ୍ କନେଷ୍ଟବଲ ଦି' ଜଣ ମୋର ପାଖାପାଖି ଅତି ଚତୁର ମଣିଷ ଭଳି ଘୂରିଲେଣି । ତଥାପି ମୁଁ ଭୟ କରିନାହିଁ । ଯାଇ କଦଳୀବାଲାର ଠେଲାରୁ କମଳାଟିଏ ଉଠାଇଲି । ହେଯ୍ଯୁଜ୍ଞାନ କଲାଭଳି କମଳାଟିକୁ ତଳେ ପକାଇ ଗୋଡ଼ରେ ମକଚି ଦେଲି । କନେଷ୍ଟବଲ ଦୁଇଜଣ ମୋର ଦୁଇ ହାତକୁ ଦୁଇପଟୁ ଧରି ପକାଇଲେ । ମୁଁ ପଚାରିଲି, ଏ କଣ ? ସେ ଦୁହେଁ କହିଲେ : କଣ ହଉଚି ? ମୁଣ୍ଡ ଖରାପ ନା ପେଟ ଗରମ ?

ମୁଁ କହିଲି : ପାଗର ଖବର କିଏ ରଖୁଛି ? ଏଇ ଦେଖନ୍ତୁ, ଆମ ଆଖି ଆଗରେ ପୃଥିବୀ କେମିତି ଘିର୍‌ଘିରୁ, ଗୋଳେ ଗୋଳା ହୋଇ-ଗଲେ ।

ସେ ଦୁହେଁ ମତେ ନେଇ ତାଙ୍କ ବାବୁ ସାମ୍‌ନାରେ ହାଜର କରାଇଲେ ଓ ତାଙ୍କୁ କଣସବୁ କହିଲେ ।

ବାବୁ ପଚାରିଲେ : କଣ କହୋ ?

ମୁଁ କହିଲି : ନାଇଁ କହୁନାହିଁ । ସବୁ ଭଲ । ତମେ କଣ ପୃଥିବୀକୁ ଦଳାମକଚା ହେଲ ବୋଲି କହୁଛ ? ପୃଥିବୀ ନା କଦଳୀ ? ସେ ପଚାରିଲେ ।

: କଦଳୀ ନୁହେଁ, କମଳା । ମୁଁ କହିଲି ।

: ପ୍ଲାଟଫର୍ମକୁ ଅପରିଷ୍କାର କରିଥିବା ହେତୁ ତୁମକୁ ମୁଁ ହାଜତରେ ପୂରାଇ ଦେଇପାରେ, ଜାଣ ?

: ଯୁଁା ପୂର୍ବରୁ କାହାକୁ କାହାକୁ ସବୁ ପୂରାଇଲେଣି ? ମୋର ପ୍ରଶ୍ନ ।

: ଆଚ୍ଛା ? ସେ ଗର୍ଜନ କଲେ ଓ କହିଲେ : ଦେଖିବ ଏବେ ?

ବାସ୍ତବରେ ମୁଁ ଆପଣଙ୍କୁ ହିଁ ଦେଖିବାକୁ ଇଚ୍ଛା କରୁଥିଲି । ମୋର ପର୍ସଟି କିଏ ଚୋରାଇ ନେଇଛୁ । ମତେ ସାହାଯ୍ୟ କରନ୍ତୁ ।

: ସେ କଥା ପରେ ବୁଝାଯିବ । ସେ କହିଲେ ।

: କିନ୍ତୁ ସେ ଘଟଣାଟି ଆଗ ଘଟିଥିଲା । ପର୍ସରେ ମୋର ଟିକେଟ ଥିଲା । ମୁଁ ବାହାରକୁ ଯାଇପାରୁନି । ମତେ ନହେଲେ ବାହାରେ ଛାଡ଼ିଦିଅନ୍ତୁ ।

: ଆଚ୍ଛା···ଆଚ୍ଛା । ଆ···ଚ୍ଛା । ସେ ମୁଣ୍ଡ ଝୁଙ୍କାଇ ବାହୁଲ୍ୟ କଲାଭଳି ହସିଲେ । ମୁଁ ତାଙ୍କର ପରବର୍ତ୍ତୀ ଉଚ୍ଚାରଣକୁ ଅପେକ୍ଷା କଲି । ବେଶ୍ କିଛି ସମୟ ପରେ ସେ କହିଲେ : ହୁଁ ।

ଅନେକ ସମୟ ଯାଏଁ ସେ ଆଉ କିଛି ହିଁ କହିଲେ ନାହିଁ । ମୁଁ ଅପେକ୍ଷା କଲି । ଠିଆହୋଇ ରହିଲି । ସେ ବୋଧେ କିଛି ନିଷ୍ପତ୍ତି ନେଇ ପାରୁ ନଥିଲେ । ମୁଁ ଥିଲି ନିର୍ଲିପ୍ତ ।

ସେ କଣ ମତେ ସାହାଯ୍ୟ କରିବେ ? କରିପାରିବେ ? କ୍ଷମତା ଥାଇପାରେ, କିନ୍ତୁ ତାଙ୍କର ସାମର୍ଥ୍ୟ କୁଳେଇବ ? ମୁଁ କୌଣସି ଆଶା ଦେଖିପାରୁ ନଥିଲି ।

ପୁଣି ଏକ ରେଳଗାଡ଼ି ଆସିବାର ଶବ୍ଦ ଶୁଭିଲା ।



# ଆତଙ୍କ

ସମୀରଠାରେ ଥିଲା ଅକଳନ ପ୍ରତିଭା ଓ ଗୁଣ ଏବଂ ଅପରୂପା ବିଶାଖା ପାଖରେ ଥିଲା ସାରି ପରି ସୁମଧୁର କଥା କହୁଥିବା ଏକ ତରଳ ହୃଦୟ । କଲେଜରେ ଦୁହେଁ ଉପର ଡଳ ଶ୍ରେଣୀରେ ପଢ଼ୁଥିଲେ । ସମୀର ଥିଲା ଖୁବ୍ ମେଧାବୀ ଛାତ୍ର । ସେ ଚାହିଁଥିଲେ କଲେଜରେ ଦୁଇବର୍ଷ ବିଜ୍ଞାନ ପଢ଼ି ଅତି ସହଜରେ ଇଂଜିନିୟରିଂ କିମ୍ବା ମେଡ଼ିକାଲ କଲେଜରେ ପଢ଼ିବାର ସୁଯୋଗ ହାସଲ କରିପାରିଥାନ୍ତା । ସେ ଆକାଙ୍‌କ୍ଷା ତାର ନଥିଲା । ନିଜ ନିମ୍ନ ମଧ୍ୟବିତ୍ତ ପରିବାରର ଅତି ସୀମିତ ସାମର୍ଥ୍ୟକୁ ଦୃଷ୍ଟିରେ ରଖି ସେ ଚାହିଁଲା ଜଣେ ଅଧ୍ୟାପକ ହେବ । ଇଂରାଜୀ ଥିଲା ତାର ପ୍ରିୟ ବିଷୟ । କଲେଜରେ ଓ କଲେଜ ବାହାରେ ଛାତ୍ରଛାତ୍ରୀଙ୍କ ପାଇଁ ଆୟୋଜିତ ଉଭୟ ଇଂରାଜୀ ଓ ଓଡ଼ିଆ ପ୍ରବନ୍ଧ ତଥା ବକ୍ତୃତା ପ୍ରତି-ଯୋଗିତାରେ ସେ ଥିଲା ଅପ୍ରତିଦ୍ୱନ୍ଦ୍ୱୀ । ଅତୁଳନୀୟ ତାର ବକ୍ତୃତା ଦେବାର ଶୈଳୀ, ଯାହା ଜଣେ ଶୁଣିବା ମାତ୍ରେ ବସିବା ଜାଗାରୁ ସାମାନ୍ୟ ଘୁଞ୍ଚିବା ତ ଦୂରର କଥା, ପଲକ ସୁଦ୍ଧା ପକାଇ ପାରିବ ନାହିଁ । ବିଶାଖା ପଢ଼ାପଢ଼ିରେ ମୋଟେ ସରସ ନଥିଲା । ପ୍ରତିଯୋଗିତାର ପାଣିକୁ ସେ ସର୍ବଦା ଏକ ଡରକୁଳା ଥିଲା । ସମୀରର କେଉଁଠି ବକ୍ତୃତା ଦେବାର ଥିଲେ ସେ ଅବଶ୍ୟ ଯାଇ ଶୁଣେ । ତା'ମନରେ ସୃଷ୍ଟିହୁଏ ଅପୂର୍ବ ଉନ୍ମାଦନା । ଯେମିତିକି ସାରା ଆକାଶକୁ ଢାଙ୍କି ରଖିଛି କମନୀୟ, ଗମ୍ଭୀର କଳା ବାଦଲ; ଘୁରିଆଡ଼ ଅନ୍ଧାର ଅନ୍ଧାର ଓ ବାହାରେ ଶ୍ରାବଣର

ଘନଘୋର ଛେଚଗୁଳୁଟା ବର୍ଷା, ସାଇଁ ସାଇଁ ଶବ୍ଦ ଏବଂ ସେ ଝରକା ପାଖରେ ବସିଛୁ ଅପଲକ ନେତ୍ରରେ ! ଶ୍ରାବଣର ଅବିରାମ ବର୍ଷାଠାରୁ ତାକୁ ଅଧିକ ତନ୍ମୟ କରିଦେଇ ପାରୁଛି ଯେଉଁ ପୁରୁଷ, ସେ କଦାପି ସାଧାରଣ ହୋଇନପାରେ । ସାଧାରଣ ହେଲେ ବି ସେ ନିଶ୍ଚୟ ପାବଂଶର ମହାଦେବ । ବିଶାଖା ମନେମନେ ନିଜ ହୃଦୟକୁ ଆଞ୍ଜୁଳାରେ ଧରି ସମୀରର ପାଦତଳେ ସମର୍ପଣ କରିଦେଲା ।

ସମୀରର ଚେହେରାରେ କିନ୍ତୁ ସେପରି କିଛି ବିଶେଷତ୍ୱ ନଥିଲା ଓ ଶସ୍ତା ପୋଷାକ ପିନ୍ଧି ସେ ଆହୁରି ଅପଚ୍ଛନ୍ଦିଆ ଦିଶୁଥିଲା । ପିଲାମାନେ ପକେଟ୍‌ରେ ବା ମୋଜା ଭିତରେ ପାନିଆ ରଖି କଲେଜକୁ ଆସୁଥିବା ବେଳେ ସେ ଭଲଭାବରେ ଗାଧୁଆପାଧୁଆ କରି ମୁଣ୍ଡ କୁଣ୍ଡାଇ ଆସୁଥିଲା କି ନାହିଁ ସନ୍ଦେହ । ଅତି ଉଚ୍ଚ ତା'ର କପାଳ, ଗୋଲ ଏଣ୍ଡୁରି ପିଠାର ଭ୍ରମ ସୃଷ୍ଟି କରେ । ଗୋଲ ୩ ଭଳି ଦିଶୁଥିବା ନାକପୁଡ଼ା ନାକଦଣ୍ଡା ତୁଳନାରେ ବହୁତବଡ଼, ଯେମିତିକି ନାକଟି ଗୋଟେ କନିଅର ଫୁଲ । ଲାଲ ଟକ୍‌ଟକ୍ ଓଠ, କିନ୍ତୁ ମୋଟା ଓ ତଳ ଓଠଟିକୁ ଉପର ଓଠ ଦ୍ୱାରା ଚେଷ୍ଟାକରି ସୁଦ୍ଧା ସେ ଢାଙ୍କି ରଖିପାରେ ନାହିଁ । ବେଢ଼େଙ୍ଗା ଦାନ୍ତ, ଗୋଳିଆ ଥୋଡ଼ି । ମୋଟାମୋଟି ମୁହଁଟି ଗୋଟିଏ ଅଶ୍ୱତ୍ଥ ପତ୍ର ଭଳି । ତାର ଉଚ୍ଚତା କୁଣ୍ଠିତ ଭାବେ ସାଢ଼େ ପାଞ୍ଚ ଫୁଟ ହୋଇପାରେ । ଗହମ ରଙ୍ଗର ଦେହ । ସ୍ୱାସ୍ଥ୍ୟ ମଧ୍ୟମ । ବିଶାଖାକୁ କିନ୍ତୁ ଭାରି ଭଲ ଲାଗୁଥିଲା ତା'ର ଗମ୍ଭୀର, ବୁଦ୍ଧିଦୀପ୍ତ ଅଥଚ ନିର୍ଲିପ୍ତ ବଡ଼ ବଡ଼ ଆଖି ଦୁଇଟି ଏବଂ ତାର ଚକ୍‌ଚକ୍ କପାଳ ।

ବିଶାଖାର ସୌନ୍ଦର୍ଯ୍ୟର ତୁଳନା ସେ ନିଜେ । ଶୃଙ୍ଗାର ରସର କୌଣସି ସୁପ୍ରସିଦ୍ଧ କବିଙ୍କର କାବ୍ୟନାୟିକା ହେବାର ସମସ୍ତ ଯୋଗ୍ୟତା ତାର ଶରୀରରେ । କଲେଜରେ ଓ କଲେଜ ବାହାରେ ତାକୁ ଆକର୍ଷିତ କରିବା ପାଇଁ ସହରର ବଡ଼ବଡ଼ ଯୁବକମାନଙ୍କ ମଧ୍ୟରେ ରୀତିମତ ପ୍ରତିଯୋଗିତା ଲାଗି ରହିଥିଲା । ସେ ଚାଲିଲା ସମୀର ଆଡ଼କୁ । ସମୀରକୁ ନିଜ ଘରକୁ ବି ଡାକି ନେଇଗଲା । କି ପ୍ରକାଣ୍ଡ ଭବନ ! ବିଶାଖାର ଘର ପାଖରେ ପହଞ୍ଚି ସମୀରର ଆଖିଦୁଇଟି ବିସ୍ଫାରିତ ହୋଇଗଲା । ଘର

ଭିତରକୁ ଯିବାପରେ ତ ସେ ଚମକି ଯାଇ ସଙ୍କୁଚିତ ହୋଇଗଲା । ଏପରି ଏକ ସ୍ୱପ୍ନମୟ ପ୍ରାସାଦରେ ରହେ ବିଶାଖା ! ଇଏ ଘର ନା ରାଜଭବନ ?

ବିଶାଖା ଯେତେ ସମସ୍ତ ଦାବୀ କରୁଥିଲା ସମୀର ତାଙ୍କୁ ସେତେ ସମସ୍ତ ଦେଇପାରୁ ନଥିଲା । ବିଶାଖା ଯେଉଁ ପରିବାର ଓ ପରିବେଶର ଝିଅ; ସମୀରକୁ, ଘଣ୍ଟା ଘଣ୍ଟା ଧରି, କୌଣସି ଅଭିଜାତ ହୋଟେଲରେ କିଛି ଖାଇବା ବାହାନାରେ ବସାଇ ଗପିବାକୁ ଚାହିଁବା, ସାଙ୍ଗହୋଇ ସିନେମା ଦେଖିବାକୁ ଡାକିବା ହୁଏତ ସ୍ୱାଭାବିକ ଥିଲା । ଏପରିକି, ସେ ନିଜେ ଚଳାଇ, କେବେକେବେ କାର୍ ଧରି କଲେଜକୁ ଚାଲି ଆସୁଥିଲା ଓ ସମୀରକୁ ତା' ସାଙ୍ଗରେ ବୁଲିବାକୁ ଯିବାପାଇଁ ବାଧ୍ୟ କରୁଥିଲା । ସମୀର ସଖୀ ହେଲେ ବି ସେସବୁକୁ ପସନ୍ଦ କରୁନଥିଲା ।

ବିଶାଖା ବାରମ୍ବାର ସମୀରକୁ ତାଙ୍କ ଘରକୁ ନେବାପରେ ତା'ର ବାପା ଓ ଭାଇ ସତର୍କ ହେଲେ । ଭିକାରୀ ଛୁଆ ଭଳି ଦିଶୁଥିବା ଏଇ ପିଲାଟିକୁ ବିଶାଖା ଆଉ ଭଲ ପାଇବା ଆରମ୍ଭ କରି ଦେଇ ନାହିଁ ତ ! ଯଦି ପୁଣି ତାକୁ ହିଁ ବାହା ହେବ ବୋଲି ଜିଦ୍ ଧରିବ ନାହିଁ ତ !

ଯାହା ଆଶଙ୍କା କରାଯାଉଥିଲା ତାହା ହିଁ ହେଲା । ତା'ର ବାହାଘର ପ୍ରସ୍ତାବ ଚାଲିବାରୁ ବିଶାଖା ସେକ୍‌ଟୋକ୍ କହିଦେଲା କି ଯିଏ ଯଦି ବାହାହେବ ତେବେ ସମୀର ଛଡ଼ା ଅନ୍ୟ କାହାକୁ ନୁହେଁ । ସେତେ-ବେଳକୁ ସମୀର ଇଂରାଜୀ ଅଧ୍ୟାପକ । ସ୍ତ୍ରୀକୁ ଭଲକରି ମୁଠେ ଖାଇବାକୁ ଦେବାକୁ ଅସମର୍ଥ ଜଣେ ଅଧ୍ୟାପକ, ଯିଏ ରାସନ୍ ପାଇଁ କଣ୍ଟ୍ରୋଲ ଦୋକାନ ଉପରେ ନିର୍ଭର କରିବାକୁ ବାଧ୍ୟ, ସେ ହେବ ଏ ଘରର ଜ୍ୱାଇଁ ! ଅସମ୍ଭବ । ବିଶାଖାର ବାପା ଅଗ୍ନିଶର୍ମା ହୋଇ କହିଲେ ।

ବିଶାଖା ସମୀରକୁ ବୁଝାଇଲା : ତମେ ଥରେ ମାତ୍ର ସିଭିଲ୍ ସର୍ଭିସେସ୍ ପରୀକ୍ଷାରେ ବସ । ଥରେ ହିଁ ଯଥେଷ୍ଟ । ଏତେ ବିଚକ୍ଷଣ ପ୍ରତିଭାର ଅଧିକାରୀ ହୋଇ ତମେ ସାଧାରଣ ଅଧ୍ୟାପକ ଭାବେ ଜୀବନ

ବଢ଼ାଇବାର ପଣ କରି ନିଜ ପ୍ରତି ଘୋର ଅନ୍ୟାୟ କରୁଛ । ତୁମେ ଆଇ.ଏ.ଏସ୍. ଅବଶ୍ୟ ପାଇବ ଓ ତା'ପରେ ଆମ ପରିବାରର ସମସ୍ତେ ମଣେ ତମ ସହିତ ବାହା ଦେବାକୁ ଗର୍ବର ସହିତ ତମରି ଦ୍ୱାରସ୍ଥ ହେବେ ।

ସମୀର ସ୍ମିତ ହସିଲା । କହିଲା : ଅଧ୍ୟାପକ ହେବା ମୋ ଜୀବନର ଲକ୍ଷ୍ୟ ଥିଲା । ତାହା ମୁଁ ହାସଲ କରିପାରିଛି । ଚେଷ୍ଟା କଲେ ମୁଁ ହୁଏତ ଅନ୍ୟ କିଛି ହେଇପାରନ୍ତି । କିନ୍ତୁ ପ୍ରଶାସକ ହେବା ଏକ ଭିନ୍ନ ମାନସିକ-ତାର ଅପେକ୍ଷା ରଖେ । ମୋର ସେ ଲାଳସା ନାହିଁ । ତେବେ ମୁଁ ମୋ ବାଗରେ ଅବଶ୍ୟ ଉନ୍ନତି କରିବାକୁ ଚାହେଁ । ଡକ୍ଟରେଟ୍ ଓ ଡି. ଲିଟ୍ କରିବା ଏବଂ କିଛିକାଳ ପାଇଁ ବିଦେଶ ଯିବାକୁ ଚେଷ୍ଟା କରିବାକୁ ମୋର ଖୁବ୍ ଆଗ୍ରହ ରହିଛି । ମୋ ଦେଶର କୌଣସି ସ୍ୱନାମଧନ୍ୟ ବିଶ୍ୱବିଦ୍ୟାଳୟର ପ୍ରଫେସର ହେବା ହିଁ ବର୍ତ୍ତମାନ ମୋର ସ୍ୱପ୍ନ । ତୁମକୁ ନପାଇଲେ ମୋର କଣ ହେବ, ମୁଁ ଆଉ ଭାବିପାରୁନାହିଁ; ହୁଏତ ଲକ୍ଷ୍ୟପଥରୁ ମୁଁ ବିଚ୍ୟୁତ ହେବି । କିନ୍ତୁ ତୁମକୁ ପାଇବା ହିଁ ତ ମୋ ଜୀବନର ପ୍ରାଥମିକ ଲକ୍ଷ୍ୟ ନଥିଲା ବିଶାଖା । ବରଂ ନିଜର ଲକ୍ଷ୍ୟ ଓ ସ୍ୱପ୍ନ ନିର୍ଦ୍ଧାରଣ କରିବା ବେଳେ ମୁଁ ତୁମକୁ ଚିହ୍ନି ହିଁ ନଥିଲି ।

ବିଶାଖାକୁ ଭାରି ଭଲ ଲାଗେ ସମୀରର ଦୃଢ଼ତା । ସମୀର ଅସ୍ଥିର ନୁହେଁ । ଇତଃସ୍ତତଃ ହୁଏନା । ଯାହା କହେ ତାହା କରେ ଓ କର୍ତ୍ତବ୍ୟ ଆଗରେ ଦ୍ୱିଧାର ସ୍ଥାନ ନାହିଁ ହୋଇ ତାର ବିଶ୍ୱାସ । ବିଶାଖା ଆଉ ତାକୁ ପ୍ରବର୍ତ୍ତାଇଲା ନାହିଁ ।

ବିଶାଖାକୁ ତା ଜିଦ୍‌ରୁ ଟଳାଇ ନପାରି ତା' ଭାଇ ସମୀରକୁ ସତର୍କବାଣୀ ଶୁଣାଇ ଦେଲା । ବିଶାଖାର ରାସ୍ତାରୁ ଅପସରି ନଗଲେ, ନିଜ ଜୀବନ ଉପରୁ ମମତା ତୁଟାଇ ମରିବାକୁ ପ୍ରସ୍ତୁତ ହୋଇଯିବା ପାଇଁ ଧମକ ମଧ୍ୟ ଦେଲା । ଏତେ ଧନଶାଳୀ ଲୋକ ପକ୍ଷରେ ଅସମ୍ଭବ ବା କଣ ? ଅଥଚ ସମୀର ଥିଲା ବାପା, ମା'ଙ୍କର ଅନ୍ଧର ଲଉଡ଼ି । ବାପା ଗ୍ରେଟ୍ ଚାକିରୀରୁ ଅବସର ନେଇ ସାରିଥିଲେ ଓ ଯାହା ପେନ୍‌ସନ୍ ପାଉଥିଲେ, ଘରଭଡ଼ାକୁ ନିଅଣ୍ଟ ଥିଲା । ସମୀର ଭୀରୁ ନୁହେଁ । କିନ୍ତୁ

'ଆସ, ମତେ ମାରିବ ପରି ମାରିଦିଅ' ବୋଲି ସାର୍ଟ ଖୋଲି ଗ୍ରୀବା ଦେଖାଇ ଦେବାରେ କଣ ବା ପୌରୁଷ ଅଛି ? ସମୀର କିଛି ଠିକ୍ କରିପାରୁ ନଥିଲା । ତା'ର ମନୋବଳ ଭାଙ୍ଗି ପଡ଼ୁଥିଲା ।

ସମସ୍ତ ପ୍ରତିକୂଳ ପରିସ୍ଥିତିରେ ବିଶାଖା ଦମ୍ଭର ସହିତ ଠିଆ ହେଲା ଗୋଟିଏ ସୁଦୃଢ଼ ସ୍ତମ୍ଭ ଭଳି; ପ୍ରଳୟଙ୍କରୀ ଝଡ଼ବତାସରେ ବିଗଡ଼ିଜା ନାବିକର ନିକଟ ସମ୍ମୁଖରେ ଅଲୌକିକ ବନ୍ତିଘର ପରି । ତା'ଦ୍ୱାରା ଅନୁପ୍ରାଣିତ ହୋଇ ସମୀର ନିଜ ଗ୍ରୀବାକୁ ଦୃଢ଼ କରିନେଲା, ବର୍ଷବର୍ଷ ଧରି ହୀରାକୁଦ ଜଳ ଭଣ୍ଡାରରେ ବୁଡ଼ି ରହିଥିବା ଗଛଗୁଡ଼ିକର, ସଶକ୍ତ ଲୌହତୁଲ୍ୟ ମଞ୍ଜିକାଠ ଭଳି ।

ସେମାନେ ଯାଇ କୋର୍ଟରେ ବାହା ହେଇଗଲେ । ସମୀରର ବାପା, ମା ସୁଦ୍ଧା କୋର୍ଟକୁ ଗଲେ ନାହିଁ । ଏମାନଙ୍କ ବିବାହର ସାକ୍ଷୀ ରହିଲେ ସମୀରର ଜଣେ ଅଧ୍ୟାପକ ବନ୍ଧୁ ଓ ବିଶାଖାର ଜଣେ ବିବାହିତ ଦୂରସମ୍ପର୍କୀୟା । ଏପରି ଭାବେ ବିବାହ କରିବାକୁ ସମୀର ବିଲକୁଲ୍ ଅନିଚ୍ଛୁକ ଥିଲା । ନିଜ ବାପା, ମା'ଙ୍କ ମନରେ ଦୁଃଖ ଦେବାଭଳି ସେ ଘଟାଇଲା ସେଇ ପ୍ରଥମ ଘଟଣା । ବିଶାଖାକୁ ଧରି ସେ ଘରକୁ ଆସିଲା । ବାପା, ମା ନିରୁତ୍ସାହିତ ଭାବେ ସ୍ୱାଗତ ଜଣାଇଲେ । ଗୃହପ୍ରବେଶ କଲାବେଳେ ବିଶାଖା ଦେହରେ କିଛି ବି ଅଳଙ୍କାର ନଥିଲା । ପିନ୍ଧିଥିବା ଲୁଗାପଟା ଛଡ଼ା ବାପଘରୁ ସେ ଆଉ କିଛି ମଧ୍ୟ ଆଣିନଥିଲା । ସମୀର ତା'ର ମା'ର ଆଖିକୁ ଦେଖିଲା । ସେ ଭୀଷଣ ଆହତ ହୋଇ କାନ୍ଦକାନ୍ଦ ଓ ଥମଥମ ହେଉଥିଲେ ।

ସମୀର ଘରକୁ ଆସି ବିଶାଖା ମନରେ ଆଶଙ୍କା ସୃଷ୍ଟି ହେଲା, ଏପରି ପରିବାରରେ, ପ୍ରଚଳିତ ପରିସ୍ଥିତିରେ ସାରାଜୀବନ କଣ, କେତୋଟି ମାସ ସୁଦ୍ଧା ଚଳିବା ଖୁବ୍ କଷ୍ଟକର ବ୍ୟାପାର । ଗ୍ରୋଷେଇ ତ ବୋହୂ ହିସାବରେ କରିବାକୁ ହିଁ ପଡ଼ିବ ଓ ତାହାପୁଣି କାଠ କି ଅଙ୍ଗାର ଚୂଲି ଅଥବା ଷ୍ଟୋଭରେ । ଘରେ ଅଛି ଗୋଟିଏ କଳା ଧଳା ଟେଲି-ଭିଜନ୍ ସେଟ୍ ! ଆଲଣା ବୋଲି ଯେଉଁଟି ଅଛି ସେଥିରେ ରହିବ ସମସ୍ତଙ୍କର ଲୁଗାପଟା । ଦୁଇବଖରିଆ ଘର । ପ୍ରଥମ ବଖରାଟି ଡ୍ରଇଂରୁମ୍

ଓ ବାପା, ମାଙ୍କ ଶୋଇବା ଘର । ବ୍ଧିଶିଷ୍ଟ ବେଡ୍‌ରୁମ୍ । ବେଡ୍‌ରୁମ୍‌ରେ ଦ୍ୱାତର ଚୂଡ଼ି ସାମାନ୍ୟ ରୁଣୁଝୁଣୁ ହେଲେ ସୁଦ୍ଧା ସେପଟ ବଖରାକୁ ନ କାନେଇଲେ ବ ଶୁଭବ । ସମୀର ସ୍କୁଟର ଖଣ୍ଡେ କଣିପାର ନାହିଁ । କୁଆଡ଼େ ବୁଲିଯିବାକୁ ହେଲେ ରିକ୍‌ସା କମ୍ବା ଟାଉନ୍‌ବସ ଉପରେ ନର୍ଭର କରିବାକୁ ପଡ଼େ । ସମୀର ସାଇକଲରେ କଲେଜକୁ ଯାଏ । ବଶାଖାକୁ ରୁନ୍ଧ ଲାଗେ । ଜଣକୁ ପାଇବା କଣ ଜୀବନର ଏକମାତ୍ର ଧେୟ ? ସେ କଛୁ ଠିକ୍ କରିପାରେନା ।

ଶାଶୁ ଶ୍ୱଶୁର ଦନସାରା ଗୁମ୍‌ସୁମ୍ ରହନ୍ତ । ତା ସହତ ଯେତକ ନହାତ ଆବଶ୍ୟକ ସେତକ ମାତ୍ର କଥାବାର୍ତ୍ତା କରନ୍ତ । ସମୀର ସହତ ମଧ୍ୟ ସେମାନଙ୍କର ବଶେଷ ଆଳାପ ହୁଏ ନାହିଁ । ସମୀର ଏମିତବ ଗମ୍ଭୀର ସ୍ୱଭାବର । ଏବେ ପୁଣି ଉଦାସ । ଜୀବନଯାପନରେ କଛୁ ବ ଚମକ ନାହିଁ । କଣ ତେବେ ଜୀବନର ଲକ୍ଷ୍ୟ ? କେଉଁଠି କଛୁ ଭୁଲ୍ ରହିଗଲା ? ସେକଥା କେମିତ ଜାଣିହେବ ? ଜାଣିଲେ ବ, ସବୁକଛୁ ଠିକ୍‌ଠାକ୍ କରିହେବ କଣ ? ବଶାଖାକୁ ଛଟପଟ ଲାଗେ ।

ଶାଶୁ ଶ୍ୱଶୁର ଡ୍ରଇଂ ରୁମ୍‌ରେ ବସି ନଜ ଭତରେ ଯାହାକଛୁ କଥାବାର୍ତ୍ତା, ଆଲୋଚନା କରନ୍ତ । ଅଧିକାଂଶ ସମୟରେ ଧୀର ସ୍ୱରରେ । ବଶାଖାର ମନକୁ ପାପ ଛୁଏଁ । ସେମାନେ କଣ ତାକୁ ଭଲ ପାଉ-ନାହାନ୍ତ ? ତା'ର ଏ ଘରକୁ ବୋହୂ ହୋଇ ଆସିବା ଘଟଣାକୁ ସେମାନେ ବରଦାସ୍ତ କରିପାରୁ ନାହାନ୍ତ ? ସମୀର କଲେଜକୁ ଗଲାପରେ ଦନେ ଦନେ ବଶାଖା ଶାଶୁ ଶ୍ୱଶୁରଙ୍କ କଥାକୁ କାନେଇ ରହି ସମୟ କଟାଏ । ସମୀର ଏମିତ ଅଗ୍ରନକ ଘରକୁ ବୋହୂ ଆଣିବା ଘଟଣାରେ ସେମାନେ ବାସ୍ତବକ୍ ମର୍ମାହତ । ଅଥଚ ନରୁପାୟ । ସେମାନେ ଅନୁଭବ କରନ୍ତ ସମୀର ପାଇଁ ସମାଜରେ ସେମାନଙ୍କ ମୁଣ୍ଡ ଯେତେ ଉଚ୍ଚକୁ ଉଠିଥିଲା, ତାର ବବାହ ହେତୁ ତା'ଠାରୁ ଅଧିକ ତଳକୁ ହେଇଗଲା । ଯେମିତକା ଘରୁ ବ ଝିଅଟିଏ ଆସୁ, କେବଳ ଲୁଗାଖଣ୍ଡେ ପିନ୍ଧି ଏ ଘରକୁ ବୋହୂ ହେଇ କଦାପି ଆସି ତ ନଥାନ୍ତା !

ବିଶାଖା ସମୀରଠାରେ ଅଭିଯୋଗ କଲା : ତୁମ ବାପା, ମା ଯୌତୁକ ଆଶା କରୁଥିଲେ । ତମେ ମତେ ସେ କଥା କହିଲ ନାହିଁ ! ମୁଁ କିଛି ବି ଯୌତୁକ ଆକାରରେ ଆଣିନଥିବାରୁ ସେମାନେ ମତେ ଭଲ ପାଉନାହାନ୍ତି ।

ସମୀର ବୁଝାଇଲା : ସେମାନଙ୍କର ସେ ଲୋଭ ନଥିଲା ବୋଲି ମୁଁ ଦୃଢ଼ଭାବେ କହିପାରିବି ନାହିଁ । କିନ୍ତୁ ତମେ ଜାଣିରଖ, ସେମାନେ ଭାରି ନିରୀହ । ଯଦିବା ସେମାନେ ତୁମକୁ ଖୁବ୍ ଗୋଟେ ମୁଣ୍ଡରେ ବସାଇଲା ଭଳି ଆଦର କରୁନାହାନ୍ତି, ମୁଁ ଜାଣେ, ସେମାନେ ତୁମକୁ ହତାଦର କରନ୍ତି ନାହିଁ ।

ବିଶାଖା ନୀରବ ରହିଲା । କିନ୍ତୁ ତା'ର ମନ ମାନିଲା ନାହିଁ । ଯେତେବେଳେ ଦେଖି ଶାଶୂ, ଶ୍ୱଶୁର ମୁହଁକୁ ମୁହଁ ଯୋଡ଼ି ଫୁସ୍‌ଫାସ୍ ହେଉଛନ୍ତି । ବିଶାଖା ଅସହିଷ୍ଣୁ ହୋଇଉଠିଲା । ତାର ସନ୍ଦେହ ହେଲା ସେମାନେ ତା ବିରୁଦ୍ଧରେ ନିଶ୍ଚୟ କିଛି ଷଡ଼ଯନ୍ତ୍ର ରଚନା କରୁଛନ୍ତି । ସେମାନଙ୍କ ମୁହଁକୁ ଦେଖିଲେ ତା ମୁହଁ ଶେତା ପଡ଼ିଯାଉଥିଲା । ସେମାନେ ଗମ୍ଭୀର ଭାବେ ତା ମୁହଁକୁ ଚାହିଁଲେ, ସେ ଶିହରି ଉଠିଲା । ସେ ଦିନକୁ ଦିନ ନିଜକୁ ବେଶୀରୁ ବେଶୀ ଏକୁଟିଆ ମନେକଲା ଓ ସମୀରକୁ ଶାନ୍ତିରେ ରହିବାକୁ ଦେଲା ନାହିଁ । ତା'ର ବିଚିତ୍ର ମନସ୍ତତ୍ତ୍ୱ ସମୀରର ମନରେ ସୃଷ୍ଟି କରୁଥିଲା ଅସହ୍ୟ ଉଦ୍‌ବେଗ ଓ ଗ୍ଲାନି । କାରଣ ଯାହା ବି ହେଉ ଓ ଭୁଲ ଯାହାଠାରେ ବି ଥାଉ, ପ୍ରକୃତରେ ବିଶାଖା ନିଜ ଶାଶୂ ଶ୍ୱଶୁରଙ୍କୁ ଅବିଶ୍ୱାସ କରି ନିଜର ନିରାପତ୍ତା ବିପନ୍ନ ହୋଇପଡ଼ିଥିବା ଭଳି ଅନୁଭବ କରୁଛି ନା ନିରଙ୍କୁଶ ଜୀବନଯାପନ କରିବାପାଇଁ ସେ ଦୁହିଁଙ୍କୁ ନିଜ ବଳୟରୁ ଦୂରେଇ ଦେବା ନିମନ୍ତେ ହୀନ ଓ ଦାୟିତ୍ୱଶୂନ୍ୟ ଅଭିସନ୍ଧି ରଚନା କରୁଛି, ସେକଥା ସମୀର ବୁଝିପାରୁନଥିଲା ।

ସେଦିନ ଥିଲା ଶନିବାର । ବେଳ ଋତୁରତ । ଅଳ୍ପ ଦୂରରେ ଥିବା ପଡ଼ିଆ ପଟୁ ଫୁଟବଲ ଖେଳୁଥିବା ପିଲାଙ୍କର କୋଳାହଳ ଶୁଭୁଥାଏ । ଘର ପାଖ ଦେଇ ଯାଇଥିବା ରାସ୍ତା ଉପରେ କେତେବେଳେ ଦୁଇ, ଚାରିଜଣ ବଡ଼ ପାଟିରେ କଥାବାର୍ତ୍ତା କରି ଯାଉଥାନ୍ତି, ଘଣ୍ଟି ବଜାଇ

ବଜାଇ କଏ ସାଇକେଲ ଚଳାଇ ଚାଲିଯାଏ ଓ ବେଳେବେଳେ ଗୋଟିଏ ଦୁଇଟି ସ୍କୁଟର, ମୋଟର ସାଇକେଲ ବା କାର୍ ଯିବାର ଶବ୍ଦ ଶୁଭେ । ସମୀର ସେ ଆଡ଼କୁ ଧ୍ୟାନ ନକରି ଶୋଇବାଘରେ ଖଟ ଉପରେ ବସି ପିଠି ପାଖରେ ତକିଆ ରଖି, କାନ୍ଥକୁ ଆଉଜି ଉପନ୍ୟାସଟିଏ ମନଧ୍ୟାନ ଦେଇ ପଢ଼ୁଥାଏ । ବୈଠକ ଘରେ ବାପା ଓ ମା' ବସି କ'ଣ କଥାବାର୍ତ୍ତା କରୁଥାନ୍ତି ।

ବିଶାଖା ବୈଠକ ଘରକୁ ଯେମିତି ପଶିଯାଇଛି, ସେ ଯାହା ସବୁ କହୁଥାଏ, ବୁଢ଼ାବୁଢ଼ୀ ଦୁହେଁ କଥା ବନ୍ଦ କରି ଚେୟାର ଉପରେ ସିଧା ହୋଇ ବସିଗଲେ । ବିଶାଖା ଚୁପ୍‌ଚାପ୍ ଫେରି ଆସି ସମୀରକୁ ସେକଥା କହିଲା ଓ ଆକ୍ଷେପ କଲା; ସେମାନଙ୍କ ମନ କଦାପି ନିର୍ମଳ ନୁହେଁ । ତା' ହୋଇଥିଲେ ସେମାନେ ମତେ ଦେଖି ଚୁପ୍ ହୋଇ ଯାଇ ନଥାଆନ୍ତେ କି କିଛି ନଜାଣିଲା ଭଳି ଏପଟ ସେପଟକୁ ଚାହିଁ ନଥାନ୍ତେ । ଆଚ୍ଛା, କହିଲ ଦେଖି ସେମାନଙ୍କ ମଧ୍ୟରେ କଣ ବା ଏମିତି ଗୋପନ ଆଲୋଚନା ଚାଲିଛି, ଯାହା ମୁଁ ଶୁଣିବାକୁ ଅଯୋଗ୍ୟ ?

ସମୀର କହିଲା : ଦେଖ, ଏତେବେଶୀ କୌତୁହଳ ସ୍ୱାସ୍ଥ୍ୟପ୍ରଦ ନୁହେଁ । ବାପା-ମା ବୁଢ଼ାବୁଢ଼ୀ ହେଲେଣି । ତାଙ୍କ କଥାକୁ କାହିଁକି କାନେଇଛ ? ରାତି ବେଳାର ଖାଇବା ପାଇଁ ଆଜି ତମେ କଣ ସବୁ କରିବା ପାଇଁ ଭାବିଛ ? ଅନ୍ଧାର ହୋଇ ଆସିଲାଣି । ଯାଅ, ନିଜ କାମ ଆରମ୍ଭ କରିଦିଅ । ମତେ ବି ଏବେ କିଛି ସମୟ ଛାଡ଼ିଦିଅ । ମୁଁ ଉପନ୍ୟାସଟି ସାରିଦିଏଁ ।

ବିଶାଖା ଅସନ୍ତୋଷ ବ୍ୟକ୍ତ କଲା : କାହା ମନରେ କ'ଣ ଥାଏ, ତାହା ଜାଣିବାକୁ କ'ଣ ତମର ବିବେକ ଚାହେଁ ନାହିଁ ? ତମର ତ ଖାଲି ଉପନ୍ୟାସ ପଢ଼ିଲେ ସବୁ ହୋଇଗଲା !

ସମୀର ଖେଙ୍ଗା ହେଲାଭଳି କହିଲା : ଉପନ୍ୟାସର ମହତ୍ତ୍ୱ ତମ ଭଳି ଧନର ପ୍ରାଚୁର୍ଯ୍ୟ ଦେଖିଥିବା ଲୋକ କଣ ବୁଝିବେ ? ଯେଉଁ କାମ କରିବାଦ୍ୱାରା ଧନବୃଦ୍ଧି ଘଟିବାର ସମ୍ଭାବନା ନଥାଏ ତାହା ମଧ୍ୟ କରା-ଯାଇପାରେ ବୋଲି ତମେ କଣ କେବେ ଚିନ୍ତା ସୁଦ୍ଧା କରିପାର ?

ବିଶାଖା ଉତ୍ତର ଦେଲା : ନାଇଁ ତ, ଲୋକମାନେ ଉପନ୍ୟାସ ପଢ଼ି ଧନୀ ହେବାର ଉପାୟ ପାଆନ୍ତି ସିନା ! ଉପନ୍ୟାସ ନପଢ଼ି ଧନ ଉପାର୍ଜନ କରିଥିବା ଲୋକ କ ଧନୀରେ ଲେଖା ?

କହିସାରି, ସମୀରର କଥାକୁ ଅପେକ୍ଷା ନକରି, ବିଶାଖା ଚାଲିଗଲା ଓ ବୈଠକ ଘରର କବାଟ ମୁହଁରେ ଲୁଚି ରହି ଶାଶୁ-ଶ୍ୱଶୁରଙ୍କର ଆଲୋଚନା ଶୁଣିଲା । ଅଳ୍ପକ୍ଷଣ ପରେ ଫେରି ଆସି ସମୀରର ବାହୁକୁ ଟାଣି ଦେଇ ଚୁପାଗଳାରେ କହିଲା : ସେମାନେ ନିଶ୍ଚୟ କିଛି ଗହନ ଆଲୋଚନା କରୁଛନ୍ତି । ତମ ମା'ଙ୍କର ତ ଠେକୁଆ ଭଳି ଠିଆ କାନ ଯେ ସିଏ ବିଲେଇର ପାଦଶବ୍ଦ ସୁଦ୍ଧା ଶୁଣି ପାରିବେ । ମୁଁ କବାଟ ପାଖରେ ପହଞ୍ଚୁ ପହଞ୍ଚୁ ସେ କନ କନ ହେଇ ବିନା କାରଣରେ ଏପଟକୁ ଚାଲି ଆସିଲେ । କବାଟ ପାଖରେ ଥିବା ଆଲଣାରୁ ତମର ଏଇ ତଉଲିଆ ଖଣ୍ଡିକ ଧରି ମୁଁ ଯେମିତି ଏପଟକୁ ମୁହଁ ବୁଲେଇଚି, ସାଙ୍ଗେ ସାଙ୍ଗେ ପୁଣି ବୈଠକ ଘରକୁ ଚାଲିଗଲେ । ମତେ ଲାଗୁଛି ସେମାନଙ୍କ ଆଲୋଚନାରେ ନିଶ୍ଚୟ କିଛି ଅଭିସନ୍ଧି ଛପି ରହିଛି ।

: ସେ କଥା ତମେ ଜାଣ କି ସେମାନେ ଜାଣନ୍ତୁ । ସାରା ପୃଥିବୀରେ କିଏ କେଉଁଠି କଣ ଗହନ ଆଲୋଚନା କରୁଛି ସେ ବିଷୟରେ ଜାଣିବାକୁ ଚେଷ୍ଟା କରିବାପାଇଁ ମୋର ଏତେ ସମୟ ବା ଧୈର୍ଯ୍ୟ କାହିଁ ? ସମୀର ବିରକ୍ତ ହୋଇ କହିଲା ।

: ମୁଁ ଜାଣେ ପରା, ତମେ ଖାଲି ମୋ ଦେହଟାକୁ ବାହା ହେଇଛ । ମୋ ମନର ଉଦ୍‌ବେଗ, ମୋର ନିରାପତ୍ତା ବିଷୟରେ ତମେ କାହିଁକି ମୁଣ୍ଡ ଖେଳେଇବ ? ବିଶାଖା କହିଲା ।

ସମୀର ଅଗତ୍ୟା ଖୋଲି ଧରିଥିବା ବହିରେ ଚିହ୍ନ ଦେଲା । ବହିଟିକୁ ବନ୍ଦ କରି ଆଖିବୁଜି ବସିଲା । ବିଶାଖା ବିଚଳିତ ବୋଧ କଲା । ସେ ଜାଣେ, କିଛି ଟାଣକଥା ନିର୍ମମ ଭାବରେ କହିବାକୁ ଥିଲେ ସମୀର ପ୍ରଥମେ ସେମିତି ଆଖି ବନ୍ଦକରି ବସେ । ସତେଯେମିତି କାହାର ଦାନ୍ତ ଭାଙ୍ଗି ଦେବା ଭଳି ସୁକ୍ତି କରିବା ନିମନ୍ତେ ତାହା ତା'ର ପୂର୍ବପ୍ରସ୍ତୁତି

ପଡ଼ । କିଛିକ୍ଷଣ ପରେ ଆଖି ଖୋଲି ସେ ଅନର୍ଗଳ କହିଗଲା । ଆଉ କାହାକୁ କି କହିବାକୁ ଦେବ ନାହିଁ । କିଛି ବୋଲି କିଛି ଶୁଣିବାକୁ ଚାହିଁବ ନାହିଁ; ଏପରିକି କ୍ଷମାପ୍ରାର୍ଥନା ମଧ୍ୟ ନୁହେଁ । କେବଳ କହିଗଲାବ ତା'ର ମନବୋଧ ହେବାଯାଏ । ଅବଶ୍ୟ ବେଶ୍ ତାତ୍ତ୍ୱିକ କଥା ସେ କହେ, ଯାହା ଶ୍ରୋତାର ମନରେ ରୋମାଞ୍ଚକର ଏକାଗ୍ରତା ଆଣିଦିଏ । ତା'ର ବାକ୍‌ଶୈଳୀରେ ଥାଏ ରଣଦୁନ୍ଦୁଭିର ଛନ୍ଦ । ବେଶ୍ ମନଲୋଭା, ଯଦିଓ ଯାହା ଉଦ୍ଦେଶ୍ୟରେ ସେ କହୁଥାଏ ସେଇ ଲୋକଟିର ଦେହରେ ତା' ବାକ୍ୟବାଣ ବିଷବୋଳା ଶରପରି ଭେଦିଯାଇ ଅସହ୍ୟ ଜ୍ୱାଳା ସୃଷ୍ଟି କରନ୍ତି । ବିଶାଖାର ମନେହୁଏ, ଅନେକ ଉପନ୍ୟାସ ପଢ଼ି ସମୀର ଏତେ କମ୍ ବୟସରେ ଦାର୍ଶନିକ ଓ ବାକ୍‌ପଟୁ ପାଲଟି ଯାଇଛି ।

ସମୀର ଆଖି ଖୋଲିବା ସାଙ୍ଗେ ସାଙ୍ଗେ ପାଟି ଖୋଲି ପଚାରେ କ'ଣ କହୁଛି ତ, ଦେଖିଲା ବିଶାଖା ଆଉ ପାଖରେ ନାହିଁ । ଖସି ଗଲା-ଗଲାଣି । ତୀବ୍ର ଅସନ୍ତୋଷରେ ସେ ବହିଟିକୁ ଖଟର ଅପର ପ୍ରାନ୍ତକୁ ଫିଙ୍ଗିଦେଲା । ଗୋଟେ ଫଡ଼୍‌ଫଡ଼୍ ଶବ୍ଦ ବି ହେଲା । ବିଶାଖା ଆଉ ବେଡ଼ରୁମ୍‌କୁ ଆସିଲା ନାହିଁ ।

ବାପା ଓ ମା' ରାତିରେ ଖାଇସାରି ଶୋଇବାକୁ ଯିବାପରେ ବିଶାଖା ଡ୍ରଇଂରୁମ୍‌ରୁ ସେଦିନର ଖବର କାଗଜଟି ଆଣିଲା ଓ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଥିବା 'ପୁଣି ଏକ ଯୌତୁକ ଜନିତ ଜଘନ୍ୟ ହତ୍ୟାକାଣ୍ଡ' ଶୀର୍ଷକ ସମ୍ବାଦଟି ସମୀରକୁ ଦେଖାଇ କହିଲା : ବେଶ୍ କିଛିଦିନ ହେଲା, ମୁଁ ଲକ୍ଷ୍ୟ କରୁଛି, ତୁମ ବାପା, ମା ଏଇଭଳି ଖବର ଗୁଡ଼ିକୁ ମନଧ୍ୟାନ ଦେଇ ପଢ଼ୁଛନ୍ତି । ପଢ଼ିବା ପରେ ଧୀର ସ୍ୱରରେ ଗଭୀର ଆଲୋଚନାରେ ମଗ୍ନ ରହୁଛନ୍ତି । ନିଶ୍ଚୟ ତମର ବାପା, ମା ଅନ୍ୟ କାହାସହ ତମର ବାହାଘର କରିବାକୁ ଚାହୁଁଥିଲେ ଓ ପ୍ରଚୁର ଯୌତୁକ ପାଇବାର ଆଶା ରଖିଥିଲେ । ମଧ୍ୟବିତ୍ତ ପିତା, ମାତାଙ୍କ ମନ ଏହାଠାରୁ ଊର୍ଦ୍ଧ୍ୱକୁ ଯାଇନପାରେ । ପୁଅକୁ ପାଠପଢ଼ାଇ ଯୋଗ୍ୟ କରିବା ପାଇଁ ସେମାନେ ଯେତିକି ଖର୍ଚ୍ଚ କରିଥାନ୍ତି, ତା'ଠାରୁ ଅଧିକ ତା' ଶ୍ୱଶୁରଠାରୁ ଅସୁଲ କରିବା ପାଇଁ ଜାଲପାତି ବସନ୍ତି । ହୁଏତ ଏବେ ବି

ଭୂମିର ବିଛିନ୍ନ ବିବାହ କରାଇ ଢେ଼ର ଯୌତୁକରେ ସେମାନେ ଘର ଭର୍ତ୍ତି କରିବାକୁ ଆଶା ବାନ୍ଧିଛନ୍ତି ଓ ମଜ୍ଜ ଗାସ୍ତାର କଣ୍ଟା ମନେକରି ହଟାଇ ଦେବାକୁ ଚାହାନ୍ତି । ସେଥିପାଇଁ ସେମାନେ ଏଭଳି ସମ୍ବାଦ ସବୁ ଠିକ୍‌ଭାବେ ଗ୍ରହଣ କରି ହତ୍ୟା କରାଯିବାର ନିରାପଦ ଉପାୟ ଗୁଡ଼ିକ ଉପରେ ଆଲୋଚନା କରୁଛନ୍ତି ।

ତା' ବାପା-ମା'ଙ୍କ ପ୍ରତି ବିଶାଖାର ଅବିଶ୍ୱାସ, ଘୃଣା ଓ ଇତର ଧାରଣା ସମୀରର ମନରେ ସୃଷ୍ଟି କରୁଥିଲା ଅସହ୍ୟ ଅପମାନ ଓ ପରାଜୟଭାବ । ସେ ପ୍ରତିବାଦ ଜଣାଇଲା । ଅଥଚ ଚୁପ୍ ରହିବା ବଦଳରେ ଓଲଟି ବିଶାଖା ଅଧିକ ତୀବ୍ର ସ୍ୱରରେ କହିଲା : ମୁଁ ଜାଣେ ପରା, ଏବେ ବି ତମେ ମା' ବାପାଙ୍କର ଚେହ୍ଲାପୁଅ । ଅଜ୍ଞାନ, ଅକ୍ଷମ ଏବଂ ଅବୋଧ ବାଳକ । ମା'ଙ୍କର ପଣତ ତଳ ହିଁ ତମର ନିର୍ଭୟ ଆଶ୍ରୟ ସ୍ଥଳ । ମୁଁ ତ ତମର କେହି ବି ନୁହେଁ । ମୁଁ ସିନା ତମ ମୁହଁକୁ କେବଳ ଚାହିଁ, ବାପା, ଭାଇଙ୍କର ବିପୁଳ ସମ୍ପତ୍ତିରୁ କାଣି କଉଡ଼ିଟିଏର ସୁଦ୍ଧା ଆଶା ନରଖି ଲୁଗାଖଣ୍ଡେ ପିନ୍ଧି ହସି ହସି ଚାଲି ଆସିଲି !

ଶେଷଆଡ଼କୁ ବିଶାଖାର ସ୍ୱରରୁ, ସମୀର ଅନୁମାନ କଲା ସେ ଯେମିତି କି ଭାଙ୍ଗି ପଡ଼ୁଛି । କିଛି ସମୟ ବିରାମ ନେଇ ବିଶାଖା କ୍ଷୋଭ ଓ ପ୍ରଖର ଅଭିମାନ ମିଶା କଣ୍ଠରେ କହିଲା : ମୋଭଳି, ମୋ ବାପା ଘରର ସମସ୍ତେ ନିଜ କଦ୍‌ରେ ଅଟଳ ରହିଲେ । ଏଯାଏ ମୋର ସାମାନ୍ୟତମ ଖବର ମଧ୍ୟ ଜାଣିବାକୁ ଚାହିଁଲେ ନାହିଁ । ତମେ ବି ଶେଷକୁ ମୋ ପାଇଁ ଆସ୍ତେ ଆସ୍ତେ ପଥର ପାଲଟି ଯାଉଛ । ମୁଁ କେତେ ଏକା ! କେତେ ଏକାକୀ ହୋଇଯାଇଛି ମୁଁ !

ସମୀର କିଛି ବି ନକହି ବଲବଲ ଚାହିଁଥିଲା ବିଶାଖାର ମୁହଁକୁ । ଅଚାନକ ବିଶାଖାର ମୁଖଭଙ୍ଗୀ କଠୋର ହେଲା । ତା'ପରେ ସେ ଖାଲିଖି କଲବଲ ହସିଲା । କହିଲା : ଖବର କାଗଜ ପଢ଼ି ଆଜି ସଖାରେ ତମର ନିରୀହ ବାପା ତମ ସରଳ ମା'ଙ୍କୁ କଣ କହୁଥିଲେ ଜାଣ ? କହୁଥିଲେ, ପୃଥିବୀ ସାରାର ସବୁ ଖବର ଯଦି ତାଙ୍କ କାଗଜର କ୍ଷୁଦ୍ର କଳେବର

ମଧ୍ୟରେ ଛପାଇବାକୁ ଖବରକାଗଜବାଲା ନିହାତି ଅକ୍ଷମ, ଯେଉଁଭଳି ଗୋଟେ ଅଧେ ଘଟଣାକୁ ସ୍ୱିଡ଼ମତ ଅନାବୃତ କରି ପ୍ରକାଶ ନକଲେ କଣ ବା ଅସୁବିଧା ହୁଅନ୍ତା ? ଅର୍ଥାତ୍ ତମ ବାପା ଗୃହାନ୍ତ, ସେ ନିଜ ବୋହୂକୁ ହତ୍ୟା କରିବେ ଓ କୋର୍ଟ କଚେରୀକୁ କଥା ଗଲେ ନିଜ ସାଧ୍ୟମତେ ନିଅଆଣ୍ଟୁଅ କରିବେ; କିନ୍ତୁ ଖବରକାଗଜରେ ସେକଥା ପ୍ରକାଶ ପାଇ ପ୍ରଚାରିତ ନହେଉ ।

ଅସହ୍ୟ ଉତ୍ତେଜନାରେ ସମୀର ଚିତ୍କାର କଲା : ବିଶାଖା, ସଂଯତ ହୁଅ ।

ଗ୍ରିଂ ଗ୍ରିଂ ରୁମ୍‌ରେ ଘଣ୍ଟି ଜଳିଲା । ସମୀର ଅସହାୟ, ଉପାୟଶୂନ୍ୟ ଦେଖାଗଲା । କିଛିକ୍ଷଣ ପରେ ସେ ଖଟରୁ ଓହ୍ଲାଇବାକୁ ଚେଷ୍ଟା କରୁଛି, ବିଶାଖା ଗୁପ୍ତ ଅଥଚ ଓଜନିଆ ସ୍ୱରରେ କହିଲା : ହଉ, ସକାଳକୁ ବୁଝିବ !

ବିଶାଖାର ସ୍ୱର ସମୀରକୁ ଧମକ ଭଳି ଶୁଭିଲା । ସେ ସହସା ଆତଙ୍କିତ ହୋଇପଡ଼ିଲା । କାରଣ, ସମସ୍ତ ଯାହା ହେଉଛି, ସମାଜ ର ଚିରକାଳ ପାଇଁ ମୁଣ୍ଡ ତଳକୁ ହେବା ନିମନ୍ତେ 'ଶ୍ୱଶୁର ଘରେ ନବବଧୂ ପ୍ରତି ନିର୍ଯ୍ୟାତନା' ଶୀର୍ଷକ ଗ୍ରୋଟ ସମ୍ବାଦଟିଏ କୌଣସି ଖବରକାଗଜରେ ପ୍ରକାଶ ପାଇଯିବା ହିଁ ଯଥେଷ୍ଟ ଓ କେବଳ ବିଶାଖା ନୁହଁ, ପ୍ରଚଳିତ ସମୟରେ, ବୟସ ନିର୍ବିଶେଷରେ ଯେ କୌଣସି ବିବାହିତା ନାରୀ ଅକ୍ଳେଶରେ ସେତିକ କରିଦେଇ ପାରିବ । ହୁଏତ ତାହାହିଁ ବିଶାଖାର ଉଦ୍ଦେଶ୍ୟ ।

ସମୀର ବାସ୍ତବରେ ଖୁବ୍ ଭୟଭୀତ ହୋଇପଡ଼ିଲା । ବିଶାଖା ଆଉ କିଛି କହିଲା ନାହିଁ । ସମୀରର ଆଖିକୁ ରାତିସାରା ନିଦ ଆସିଲା ନାହିଁ ।

ପାହାନ୍ତିଆ ବେଳକୁ ସମୀରର ଆଖି ନିଦ ଭାରରେ ବୁଜି ହୋଇ ଆସିଲା । ମା'ଙ୍କ ଡାକରେ ସକାଳେ ତା'ର ନିଦ ଭାଙ୍ଗିଲା । ମା'

ପଗ୍ଭରିଲେ : କିରେ ବିଶାଖା କାହିଁ ? ପ୍ରଶ୍ନଟି ଶୁଣି ସମୀର ଖୁଷଣ ଚମ୍କିତ ହୋଇପଡ଼ିଲା ।

ମୁହଁ ଧୋଇ ସାରି ଅତ୍ୟନ୍ତ କ୍ଷୋଭର ସହିତ ସମୀର ତା' ବାପା ଓ ମା'ଙ୍କୁ ଆକ୍ରମଣ କରିବାଭଳି ସ୍ୱରରେ ପ୍ରଶ୍ନକଲା : ତମେ ଦୁହେଁ ବିଶାଖାକୁ ଏତେ ଦୂରେଇ ରଖୁଛ କାହିଁକି ? ତା' ମନରେ ସନ୍ଦେହ ହେଉଛି ତମେ ତାକୁ ବିଲ୍‌କୁଲ୍ ଭଲ ପାଅନାହିଁ । ତାକୁ ମାରିଦେବା ପାଇଁ ଷଡ଼ଯନ୍ତ୍ର କରୁଛ ! ଅଥବା ପ୍ରକୃତରେ ତମେ ତାକୁ ମାରିଦେବାକୁ ଗ୍ଭହଁ, ଯେହେତୁ ସେ କାଣି କଉଡ଼ିଟିଏ ସୁଦ୍ଧା ଯୌତୁକ ଆକାରରେ ଆଣିନାହିଁ !

ସମୀରର ବାପା-ମା ସ୍ତବ୍ଧ ହୋଇ ତା' ମୁହଁକୁ ଗ୍ଭହିଁ ରହିଲେ । ସମୀର, ବାପାଙ୍କ ଆଖିରେ ଆଖି ରଖି, କହିଗ୍ଭଲିଲା : ତମମାନଙ୍କର ସବୁ କଥାବାର୍ତ୍ତା ସିଏ ଲୁଚିଲୁଚି ଶୁଣୁଛି । ରାତିରେ ତ ସିଏ କହୁଥିଲା, ଗତ-କାଲିର ଖବରକାଗଜରେ ପ୍ରକାଶ ପାଇଥିବା ବଧୂହତ୍ୟା ସମ୍ବାଦରୁ ଉପାୟ ସଂଗ୍ରହ କରି ତମେ ତାକୁ ପୋଡ଼ି ମାରିଦେବା ପାଇଁ ସନ୍ଧ୍ୟାରେ ଗୁପ୍ତ ଆଲୋଚନା କରୁଥିଲ । ପୁଣି ବଧୂହତ୍ୟା ଘଟଣା ଗୁଡ଼ିକର ବିବରଣୀ ଖବରକାଗଜରେ ପ୍ରକାଶ ପାଇଥିବାରୁ ତୁମର ବରଦାସ୍ତ ହେଉନାହିଁ ବୋଲି ତମେ କହୁଥିବା ସେ ଶୁଣିଛି । ତେଣୁ ସେ ଭାବୁଛି, ତମେ ତାକୁ ହତ୍ୟା କରିବାକୁ ଯୋଜନା କରୁଛ, କିନ୍ତୁ ଖବରକାଗଜରେ ସେ ଘଟଣା ପ୍ରକାଶ ପାଇଯିବ ବୋଲି କେବଳ ଯାହା ତମ ମନରେ ସାମାନ୍ୟ ଭୟ ରହିଛି ।

ସମୀରର କଥା ଶୁଣି ତା' ବାପା ଅତି ବିବ୍ରତ ଭାବେ କହିଲେ : ଏ ତ ଭାରି ବିଚିତ୍ର କଥା । ଭାରି ଲଜ୍ଜାକର ବିଷୟ । ଆମେ କେମିତି ଏଭଳି ହୀନ ଷଡ଼ଯନ୍ତ୍ର କରିପାରୁ ? ସ୍ୱାମୀ ହେଉଛି ସ୍ତ୍ରୀର ରକ୍ଷାକାରୀ, ଆଶ୍ରୟ । ଯେଉଁଠି ସ୍ୱାମୀ ନିଜେ ତା ସ୍ତ୍ରୀକୁ ନିଜ ଜୀବନରୁ ଦୂରେଇ ଦେବାକୁ ଗ୍ଭହୁଁଥିବ, ସେଇଠି ହୁଏତ କୌଣସି ଦାୟରେ ପଡ଼ି ତା' ବାପା, ମା, ଭାଇ, ଭଉଣୀ ତାକୁ ସାହାଯ୍ୟ କରୁଥିବେ । ପୁଅର ରୋଜ-ଗାରରେ ମୁଠେ ଖାଇବାକୁ ପାଉଥିବା ଆମଭଳି ଲୋକ କଣ କେବେ ବି

ଏଭଳି କଥା ମନକୁ ଆଣିପାରେ ? କାଲିର ଖବରକାଗଜରେ, ଜଣେ ପଚିଶ ବର୍ଷର ବୁଢ଼ା ଗୋଟିଏ ନଅବର୍ଷର ଝିଅପ୍ରତି ପାଶବିକ ଅତ୍ୟାଚାର କରିଥିବାର ସମ୍ବାଦ ଅତି ରୁଚିହୀନଭାବେ ପ୍ରକାଶ ପାଇଥିଲା । ଆମେ ସେ ବିଷୟରେ କଥାବାର୍ତ୍ତା କରୁଥିଲୁ ତ, ଆମକୁ ସଙ୍କୋଚ ଲାଗୁଥିଲା କାଳେ ତମେ ଦୁହେଁ ଶୁଣିପାରିବ । କାଗଜରେ ଏଭଳି ଖବର ବରାବର ପ୍ରକାଶ ପାଉଥିବା, ମୁଁ ଦେଖିବାକୁ ପାଉଛି । ଏମିତିରେ ଏଇସବୁ ଶୋଚନୀୟ କଥା କି ମଣିଷର ଦେହସୁଦ୍ଧା ହେଇପାଉ ନାହିଁକି ? କାଗଜରେ ପ୍ରକାଶ ପାଇ ପାଇ ଏଭଳି ଦାରୁଣ ଘଟଣା ସବୁ ମଣିଷଙ୍କ ମନରେ ଶିହରଣ ଓ ପ୍ରତିକ୍ରିୟା ସୃଷ୍ଟି କରିବାକୁ ଅକ୍ଷମ ହେଇପଡ଼ୁ ନାହାନ୍ତି କି ? ଦୋଷୀକୁ କଠୋର ଦଣ୍ଡ ଦେବାର ବ୍ୟବସ୍ଥା ହେଉ । କିନ୍ତୁ ଏସବୁ କଥା ଖବର କାଗଜରେ ନ ଛପାଇଲେ କଣ ବା ଅସୁବିଧା ହୁଅନ୍ତା ? ଖବରକାଗଜକୁ ନଅବର୍ଷର ପିଲା ମଧ୍ୟ ତ ପଢ଼ିପାରେ । ଯେକୌଣସି ଝିଅ ହୁଏତ ତା' ଶୈଶବରୁ ନିଜ ଜେଜେବାପାକୁ ଦେଖି ସୁଦ୍ଧା ଭୟରେ ଶିହରି ଉଠିବ, ଯେମିତି ଖବରକାଗଜରୁ ବଧୂହତ୍ୟା ସମ୍ବାଦ ପଢ଼ି ସମାନ ଉପାୟରେ ଆମେ ବି ବୋହୂକୁ ମାରି ଦେବୁ ବୋଲି ସିଏ ଅଯଥାରେ ଆତଙ୍କିତ ହେଇପଡ଼ୁଛି ।

ବାପା ମୁଣ୍ଡ ତଳକୁ କଲେ ଓ ଦୀର୍ଘଶ୍ୱାସ ଛାଡ଼ିଲେ । ସମୀର ଆଉ ବିଳମ୍ବ ନକରି ବାହାରି ପଡ଼ିଲା । ସମସ୍ତ ଖବରକାଗଜ କାର୍ଯ୍ୟାଳୟ, ରେଳ ଷ୍ଟେସନ, ବସଷ୍ଟାଣ୍ଡ, ଟ୍ୟାକ୍ସି ଷ୍ଟାଣ୍ଡ ପର୍ଯ୍ୟନ୍ତ ବୁଲି ବୁଲି କ୍ଳାନ୍ତ ଓ ଅବସନ୍ନ ଭାବେ ଘରକୁ ଫେରିଲା । ବିଶାଖାର ସନ୍ଧାନ ମିଳିଲା ନାହିଁ ।

ସନ୍ଧ୍ୟାବେଳେ ସମୀର ଶ୍ୱଶୁର ଘରକୁ ଫୋନ କଲା, ଭୁବନେଶ୍ୱର । କେହି ଜଣେ ସେପଟୁ କହିଲା : ହ୍ୟାଲୋ ! ସମୀର ବ୍ୟଗ୍ର ସ୍ୱରରେ ପଚାରିଲା : ବିଶାଖା ସେଇଠି ଅଛି ? ଉତ୍ତର ଆସିଲା : ହଁ, ଅଛି । ସମୀର ଗଦ୍‌ଗଦ୍ ହେଇପଡ଼ିଲା । ଅନୁନୟ କଲାଭଳି କହିଲା : ମୁଁ ତା ସହିତ କଥା ହେବାକୁ ଚାହେଁ । ଅନାତ୍ମୀୟ ସ୍ୱରରେ ଉତ୍ତର ଆସିଲା : ସମ୍ଭବ ନୁହେଁ । ସେ ଖୁବ୍ କ୍ଳାନ୍ତ । ଏବେ ବିଶ୍ରାମ କରୁଛି ।

ଲାଇନ୍ କଟିଗଲା । ସମୀର ଚିତ୍କାର କଲା : ହ୍ୟାଲୋ ! ହ୍ୟାଲୋ···



# ଶୀତବସନ

ବଡ଼ ସହର । ବଜାର ଜାଗା । ରାସ୍ତାରେ ସମୁଦ୍ରର ଜୁଆରଭଟ୍ଟା ଭଳି ଗହଳି । ରାସ୍ତା ଦୁଇକଡ଼ରେ ଅନେକ ଶ୍ରେଷ୍ଠ ବଡ଼ ଦୋକାନ । ସମୟ—ମଧ୍ୟାହ୍ନ । ରାସ୍ତାରେ ଚାଲିଚାଲି ଯାଉଥିଲା ଜଣେ ଲୋକ । ଏପରିଅବସରରେ ସେ ତା' ମୁଣ୍ଡକୁ ବାଁ, ଡାହାଣକୁ ଘନଘନ ଘୂରାଇ ଦୋକାନ ଗୁଡ଼ିକୁ ଦେଖି ଦେଖି ଚାଲିଥିଲା ଯେ, ଜଣାପଡ଼ିବ ଯେପରିକି ଅନବରତ ସେ ନାହିଁ ନାହିଁ କରି ଚାଲିଛି । ଲୋକଟି ଗୋଟିଏ ଜାଗାରେ ଠିଆହେଲା । ତା' ବାଁ ହାତ ବିଭିନ୍ନ ପ୍ରକାର ପୋଷାକପତ୍ରରେ ସଜ୍ଜିତ ଏକ ଦୋକାନ । କାଚ ଭିତରେ,. ଥାକରେ, ବାହାରେ ଆଲଣାରେ ଓ ଗୋଲାକାର ଘୂରନ୍ତା ଷ୍ଟାଣ୍ଡରେ, ଛାତଠାରୁ ତଳକୁ ଝୁଲିଥିବା ରଙ୍ଗ୍‌ରୁ ହ୍ୟାଙ୍ଗର୍‌ରେ ଫେସନ୍‌ର ଜୀବନ୍ତ ପଟୁଆର । କିସମ କିସମର ପୋଷାକ, ରଙ୍ଗବେରଙ୍ଗ, ମନମୋହକ । ଛାତ ତଳକୁ ଶରତର ଟେନାଏ ଆକାଶ ପ୍ରାୟେ ହ୍ୟାଙ୍ଗର୍‌ରେ ଝୁଲୁଛି କୋଟ୍‌ଟିଏ । ସୁନ୍ଦର, ଅତିସୁନ୍ଦର । ଲୋକଟି ତା' ଉପରୁ ଆଖି ଫେରାଇ ପାରିଲା ନାହିଁ । ଝୁଲନ୍ତା ଅବସ୍ଥାରେ ଥିବା କୋଟ୍‌ଟି ସାମାନ୍ୟ ଆନ୍ଦୋଳିତ ବି ହେଉଛି ଓ ଯେମିତି କି ସୂର୍ଯ୍ୟର ସମସ୍ତ ଆଲୋକ ଟାଣିନେଇ ନିଜ ଇଚ୍ଛାମତେ ଏପାଖ ସେପାଖକୁ ବିକିରଣ କରୁଛି ଲୋଭନୀୟ, ତେଜସ୍ୱାନ ରଶ୍ମି । ଲୋକଟି ସେଇଟିକୁ କିଣିବାକୁ ଇଚ୍ଛା କଲା । ଶୀତବସନ । ଗରମ ପୋଷାକ ତ ଅବଶ୍ୟ ଆବଶ୍ୟକ । ଏତେବର୍ଷ ସେ କଟାଇଦେଲା । ଜିଦ୍‌କରି କିଣିଲା ନାହିଁ ପଶମ ବସ୍ତ୍ର । ଆଉ ସମ୍ଭାଳି ହେଉନାହିଁ । ଶୀତର ଉପଦ୍ରବ ସହିହୁଏ । ସହ୍ୟ ହୁଏ ନାହିଁ

ସମାସ୍କନ୍ଦଙ୍କ ବାକ୍ୟବାଣ । ଶୀତଋତୁରେ, କେବଳ ଜାମାଖଣ୍ଡେ ପିନ୍ଧି ବୁଲୁଥିବାରୁ, ନିଜଠାରୁ ଗରିବ ପରିଚିତବର୍ଗଙ୍କ ଗହଣରେ ତା'ର ବସାଉଠା । ଏପରି ଲୋକମାନଙ୍କ ଗହଣରେ, ଯେଉଁମାନେ ଗରମ ପୋଷାକ ପିନ୍ଧି ନଥିବେ । ଯଦିବା କିଏ ପିନ୍ଧିଥିବ, ତାହା ପିନ୍ଧି ବରଂ ତା'ର ବ୍ୟକ୍ତିତ୍ୱ ଅଧିକ ଦୟନୀୟ, କାରୁଣ୍ୟ ଦିଶୁଥିବ !

କିନ୍ତୁ, ନା । ଏତେ ଆଉ ଦାନ ଉପରେ ଦକ୍ଷିଣା ଦେବାଭଳି କ୍ଷତ ସମ୍ଭବହେବ ନାହିଁ । ଏକେ ତ ପ୍ରାଣପୀଡ଼ା; ତା' ଉପରେ ଫେର୍ ଅନ୍ୟମାନଙ୍କଠାରୁ ଅପମାନ । ଅନ୍ୟମାନଙ୍କ ହେୟଜ୍ଞାନ ଓ ବାକ୍ୟବାଣ ଆଉ ବରଦାସ୍ତ ହେଉନାହିଁ । ଆଜେବାଜେ ଜିଦ୍‌ରେ ଅଟଳ ରହି, ଶ୍ଳେଷଶ୍ଳେଷ ଅଭାବ ଗୁଡ଼ିକୁ ଆଖି ଦୁରୁଶିଆଭଳେ ବଞ୍ଚାଇ ରଖିବାରେ କିପ୍ରକାର ପୌରୁଷ ନିହିତ ଅଛି ? କେହି କେହି ଯଦିବା କହନ୍ତି, 'ଥିଲା ଜଣେ ଦୃଢ଼ ମନୋବଳ ସମ୍ପନ୍ନ ମଣିଷ, ଯିଏ ତା'ର ତମାମ୍ ଜୀବନ କେବେ ପିନ୍ଧିଲା ହିଁ ନାହିଁ ଉଷ୍ଣମ ପୋଷାକ'—ତେବେ ସେତିକି ମାନ କାଁ ଭାଁ ଜନରବ କଣ ଜଣକୁ ଇତିହାସରେ କି କିମ୍ବଦନ୍ତୀରେ ଚିରକାଳ ପାଇଁ ଅମର କରି ରଖିବା ନିମନ୍ତେ କଦାପି ଯଥେଷ୍ଟ ? ତେବେ ? ନା, କୋଟ୍‌ଟିକୁ ଅବଶ୍ୟ କିଣିବାକୁ ପଡ଼ିବ । ଏଭଳି ଈର୍ଷଣୀୟ ଓ ବ୍ୟକ୍ତିତ୍ୱବର୍ଦ୍ଧକ କୋଟ୍ ଆଉ କେବେ ବା କଣ କେଉଁଠି ମିଳିବ ? ଏଇ କୋଟ୍‌ଟି ପାଇଁ ହିଁ ଯେମିତି ତପସ୍ୟା କରିବା ଭଳି ସହିବାକୁ ହେଇଥିଲା ଏତେ ଯାତନା, ଯନ୍ତ୍ରଣା ଓ ବିତାଇବାକୁ ପଡ଼ିଲା ସମୟ ଓ ଦୁର୍ମୂଲ୍ୟ ବୟସ ! ହଁ, କୋଟ୍‌ଟି ସେ ଅବଶ୍ୟ କିଣିବ । ପାଖରେ ଏତେ ଟଙ୍କା ନାହିଁ ତ, କଣ ହେଲା ? ସମାଜରେ ନିଜର ସ୍ତର ଓ ଶିରଃ ଉଚ୍ଚ କରିବା ପାଇଁ ଅଧିକାଂଶ ଲୋକ କଣ ଋଣଂ କୃତ୍ୱା ଘୃତଂ ପାନ କରୁ-ନାହାନ୍ତି ? ଅଧିକାଂଶ ଲୋକଙ୍କ ହୃଦୟରୁ ଯାହା ଉତ୍ପନ୍ନ ହୁଏ ତାହା ହିଁ ପରା ଈଶ୍ୱରବାଣୀ ? ଅଧିକାଂଶ ଲୋକ ଯାହାକୁ ନିର୍ବାଚିତ କରନ୍ତି ସେ ହିଁ ପାଲଟେ ସରକାର, ହର୍ତ୍ତା-କର୍ତ୍ତା । ଏପରିକି ଅଧିକାଂଶ ଲୋକଙ୍କର ଭଗବାନ ସୁଦ୍ଧା ସମସ୍ତଙ୍କର ଭଗବାନ ପାଲଟି ଯିବାର ଆଶଙ୍କା ଉପୁଜେ । ଅଧିକାଂଶ ଲୋକ ଯାହା କରନ୍ତି, ତାହା ହିଁ ସିନା

କରଣୀୟ ! ସେ, ତାହେଲେ ଋଣ କରି କୋଟ୍‌ଟି କିଣି ନପାରିବ କାହିଁକି ?

ଲୋକଟି ଦୋକାନ ଭିତରକୁ ଗଲା । କୋଟ୍‌ଟିର ଦାମ୍ ପଗ୍ଡ଼ିର ବୁଝିଲା । ତା'ପରେ କହିଲା : ମୁଁ ଏଇଟିକୁ କିଣିବାକୁ ଚାହେଁ । ମୋ ପାଖରେ ସହସା ଏତେ ଟଙ୍କା ନାହିଁ । ମୋର ଗୋଟେ ଅନୁରୋଧ ରଖିବେ ? ମୁଁ ଟଙ୍କା ସଂଗ୍ରହ କରି ଧରି ଆସିବା ଯାଏ ଦୟାକରି ଏଇଟିକୁ ଅନ୍ୟକାହାକୁ ବିକିବେ ନାହିଁ । ମୁଁ ଏଇ ଗଲି ଆଉ ଆସିଲି ବୋଲି ଜାଣନ୍ତୁ ।

କହୁସାରି କୋଟ୍‌ଟିକୁ ସମ୍ମୋହିତ ଭାବେ ଚାହିଁଥିବା ଲୋକଟିର କାନ ଉପରେ ହାତୁଡ଼ି ପ୍ରହାର କଲା ପ୍ରାୟ ଦୋକାନୀ କହିଲା : ଏଇ କୋଟ୍‌ଟି ବିକି ହୋଇସାରିଛି । କିଛିସମୟ ପୂର୍ବେ ଜଣେ ବାବୁ ପସନ୍ଦ କରି ଟଙ୍କା ଧରି ଆସିବାକୁ ଯାଇଛନ୍ତି; ବୋଧେ ଫେରୁଥିବେ । ଏପରି କି ସେ ଶହେଟଙ୍କା ବଇନା ମଧ୍ୟ ରଖି ଯାଇଛନ୍ତି ।

: ତା'ହେଲେ ଏଇଟାକୁ ଆଉ ଏଇଠି ଝୁଲାଇ ରଖିଛନ୍ତି କାହିଁକି ? ଲୋକଟି ବିରକ୍ତ ହୋଇ କହିଲା ।

ଦୋକାନୀ ସ୍ମିତ ତଥା କ୍ଷମାଶୀଳ ହସଟିଏ ହସି କହିଲା : ଆପଣ ତ ନିଶ୍ଚୟ ସ୍ୱୀକାର କରିବେ, ସ୍ୱାଭାବିକ ଭାବେ ସୁନ୍ଦର ଦିଶୁଥିବା ଏବଂ ରୁଚିକର ମନେ ହେଉଥିବା ଆମର ଏଇ କୋଟ୍‌ଟି କାହା ଆଖିକୁ ବିଲ୍‌କୁଲ୍ ପୀଡ଼ା ଦେଉନଥିବ ! ତେବେ ଏପରି ଝୁଲି ରହିବା ଦ୍ୱାରା କାହାର ବା କଣ ଅସୁବିଧା ? କୋଟ୍‌ଟି ତ ଆଜ୍ଞା ଅଳ୍ପ ସମୟ ମଧ୍ୟରେ ଆମ ଦୋକାନରୁ ଚାଲିଯିବ । ଆଉ ତାକୁ ଭାଙ୍ଗି ଭୁଙ୍ଗି ଦେଇ ଦୋକାନର କେଉଁ ଆଲମିରା ଭିତରେ ମାଡ଼ମକଚ କାହିଁକି ରଖିବୁ ? ଯେଉଁଠି ଝୁଲୁଥିଲା; ଆଉ କିଛି ସମୟ ସେମିତ ଖୋଲାରେ ପ୍ରଦର୍ଶିତ ହୋଇ ରହୁଥାଉ । ଏବେ କିବା ଯାଏ ଆସେ ? ତା'ଛଡ଼ା ଅନ୍ୟଏକ ସମ୍ଭାବନାକୁ ମଧ୍ୟ ତ ଏଡ଼ାଇ ଦେଇ ହେବ ନାହିଁ ଆଜ୍ଞା ! ମନେ କରନ୍ତୁ, ସେ ଭଦ୍ର ଲୋକ, ଯଦିଓ ବଇନା ଦେଇ ଯାଇଛନ୍ତି, ଆସିଲେ ନାହିଁ । ଆମେ ତ

ପୁଣି କୋଉଠି କାହାକୁ ନା କାହାକୁ ବକବୁ ! ଝୁଲିରହନ୍ତୁ ବୋଲି ସିନା ସମସ୍ତଙ୍କ ଦୃଷ୍ଟିରେ ପଡ଼ୁଛୁ ।

ବାସ୍, ସାନୁ ସହିତ ସନ୍ତୋଷର ତାହା ପ୍ରଥମ ପରିଚୟ । ସେହିପରି ।



ରବିବାର । ଦିନ ଏଗାରଟା । କବାଟରେ କରାଘାତ ହେଲା ଏତେବେଳେ କିଏ ! ସନ୍ତୋଷର ଟେଙ୍ଗୁଆ ବସାକୁ ଦିବାରେ କେହି ଘନିଷ୍ଠ ବନ୍ଧୁ ଆସେ, ସୁଖଦୁଃଖ ହେବାକୁ । ଯିଏ ଆସୁ ନା କାହିଁକି ପ୍ରାୟ ଆସେ ସନ୍ଧ୍ୟାରେ । ବନ୍ଧୁମାନେ ସମସ୍ତ ବାହା ହେଇଗଲେଣି । ଆସିବାକୁ ସମୟ କରିପାରନ୍ତି ନାହିଁ । ସ୍ତ୍ରୀକୁ ସାଙ୍ଗରେ ଧରି ବୁଲିବୁଲି କରନ୍ତି ସେମାନେ । ତା' ଘରକୁ କେମିତି ଆସିବେ ? କାହିଁକି ? ଯଦି କାହାର ଟଙ୍କା ଧାର ମାଗିବାର ଥିବ, ଏମିତି ଅବେଳରେ ସେ ଆସେ । ଅଥବା ଆସନ୍ତି ଦୁଇ, ତିନିଜଣ ସହକର୍ମୀ; ସାଥିରେ ଅନ୍ୟ ଜଣେ ଦୁଇଜଣ ବନ୍ଧୁଙ୍କୁ ଧରି ଯାହାଙ୍କୁ ସନ୍ତୋଷ ଚିହ୍ନି ନଥାଇପାରେ ମଧ୍ୟ । ହୁଏତ ସେମାନଙ୍କର ମଦ ପିଇବାର ଥାଏ ଏବଂ ଭିଡ଼ିଓରେ ଅଶ୍ଳୀଳ ଚଳଚ୍ଚିତ୍ର ଦେଖିବାର ଯୋଜନା । ସାମାଜିକ ଶିଷ୍ଟାଚାର, ପାରସ୍ପରିକ ବୁଝାମଣା, ସହନଶୀଳତାର କଥା । ସନ୍ତୋଷ ମନା କରେନାହିଁ । ମଣିଷର ହୃଦୟ ତ ପତଳା କାଚଟିଏ ମାତ୍ର ! ପବନ ସୁଦ୍ଧା ଅଳ୍ପ ଟିକିଏ ତୀବ୍ର ହେଲେ ଚଡ଼ଚଡ଼ ଫାଟିଯାଏ; ଭାଙ୍ଗିଯାଏ । କାହାର ହୃଦୟ ଫାଟିଯିବା-ଠାରୁ ଆଉ ଅଧିକ ବେଦନାଦାୟକ କଥା କଣ ଅଛି ? ମନା କରିଦେଲେ ସେମାନଙ୍କର ଅନ୍ତରାତ୍ମା ହାହାକାର କରିଉଠିବ । ସନ୍ତୋଷ ମନା କରିପାରେ ନାହିଁ ରୋକ୍‌ଠୋକ୍ । ତେବେ ସେମାନଙ୍କ ସାମନାରେ ଖୁବ୍ ବେଶୀ ଶାଳୀନତା ରଖିପାରେନାହିଁ । ସେ ମଦ ପିଏନା । ଅଶ୍ଳୀଳ ଚଳଚ୍ଚିତ୍ର ଦେଖେନା । ସେମାନେ ସାଙ୍ଗରେ ଧରି ଆସିଥାନ୍ତି ମଦ, ମାଂସ, ଖାଦ୍ୟ । ଭି.ସି.ପି. ଓ ଭିଡ଼ିଓ କ୍ୟାସେଟ୍ । ସନ୍ତୋଷ ସେମାନଙ୍କ ପାଇଁ ଭିତର ବଖରାଟି ଛାଡ଼ିଦିଏ । ନିଜେ ଡ୍ରଇଂ ରୁମ୍‌ର ଦଉଡ଼ି ଖୋଲି ଖଟ

କାଗଜ, ପତ୍ରପତ୍ରିକା ପଢ଼େ । କେବେ କେବେ ନିଦରେ ଶୋଇଯାଏ । ସେମାନେ ଯିବା ପୂର୍ବରୁ ତାକୁ ଉଠାଇ ଦିଅନ୍ତି ।

କବାଟରେ ପୁଣି ଥରେ କରାଘାତ ହେଲା । ଏଥର ଆଙ୍ଗୁଠି ଟିପରେ ଠକ୍‌ଠକ୍, ତାଳି ବଜାଇବା ଭଳି । ସନ୍ତୋଷ କେବଳ ଚଡ଼ି ଖଣ୍ଡେ ପିନ୍ଧିଥିଲା; କବାଟ ଖୋଲିଦେଲା । କବାଟ ଖୋଲିବା କ୍ଷଣି ସେ 'ଉଃ' ବୋଲି ଶବ୍ଦ କଲା ଓ ବେଡ଼୍‌ରୁମ୍‌କୁ ଦୌଡ଼ିଯାଇ ତଉଲିଆ ଖଣ୍ଡେ ଗୁଡ଼ାଇ ହେଇପଡ଼ିଲା ।

ବନ୍ଧୁ କୃପାସିନ୍ଧୁ ଓ ତା'ର ପତ୍ନୀ ସୁଧନ୍ୟା ହସିହସି ତା' ପଛେ ପଛେ ଆସି ବେଡ଼୍‌ରୁମ୍‌ରେ ହାଜର ହେଇଗଲେ । କାକୁସ୍ଥ ଭାବେ ସନ୍ତୋଷ ଆଲଣାରୁ ସାର୍ଟ ଖଣ୍ଡେ ଉଠାଇ ଆଣି ଖୋଲା ଦେହକୁ ଢାଙ୍କିବାକୁ ଚେଷ୍ଟାକଲା । କୃପାସିନ୍ଧୁ କହିଲା : କବେ, ଇଏ ତୋର କ ଅବତାର ? ଘର ଭିତରେ ଥିବାଯାକେ, ତୁ ସେଇ ଚଡ଼ି ଖଣ୍ଡେ ପିନ୍ଧି ରହୁଛୁ ତା'ହେଲେ ? ପଇସା ନାହିଁ ଯଦି କହୁନୁ, ଆମେ ତୋ' ପାଇଁ ଲୁଙ୍ଗି ଖଣ୍ଡେ କଣିଦେବା !

ସନ୍ତୋଷ କହିଲା : ଏଇ ଘର ପାଇଁ ତ ମାସକୁ ମାସ ଭଡ଼ା ଗଣୁଛୁ ହଜାରେ ଟଙ୍କା । ଘର ଭିତରେ କବାଟ କଳି ରହିବାକୁ ପୁଣି ଲୁଙ୍ଗି କଣିବାକୁ ପଡ଼ିବ ?

ସେକଥା ଶୁଣି ସୁଧନ୍ୟା ଏପରି ହସିଲେ ଯେ ଆଉ ତାଙ୍କ ହସ ବନ୍ଦ ହେବ ବୋଲି ସନ୍ତୋଷର ଆଶା ରହିଲା ନାହିଁ । ମଝିରେ କୃପାସିନ୍ଧୁ କହିଲା : ଏଯାଏ ବବାହ କରିନାହୁଁ ବୋଲି ତୋର ଏମିତି ଯାବଣ୍ଠାପୁ ବଢ଼ିଖୋଇ ଯାଉଛି । ବତିଶ, ତେତିଶ ତ ହେଲା । କାହିଁକି ଆଉ ଅଯଥାରେ ଇନ୍ଦ୍ରିୟ ଗୁଡ଼ାକୁ କଷ୍ଟ ଦେଉଛୁ ?

ସନ୍ତୋଷ କୃତ୍ରିମ ଦୀର୍ଘଶ୍ୱାସ ଛାଡ଼ି କହିଲା : ଆମକୁ କିଏ ଅବା ଝିଅ ଦବ ଭାଇ ?

: ତୋ ଭଳି ଯୋଗ୍ୟ ପାତ୍ର ପାଇଁ କନ୍ୟା ଅଭାବ ହେଉଛନ୍ତି ? ଉଚ୍ଚଶିକ୍ଷିତ, ଭଦ୍ର, ମାର୍ଜିତ ପୁଣି ବଦଭ୍ୟାସ ବିବର୍ଜିତ । ଉତ୍ତମ ଗୃହକର୍ତ୍ତା । ରୂପରେ କନ୍ଦର୍ପ ! ଛ' ଫୁଟିଆ ସୁଠାମ ଶରୀର, ଖାଲିମତ ସ୍ପୋର୍ଟସ୍‌ମ୍ୟାନର ବଡ଼ ଭଳି । କେତେ ଝିଅ ତୋ ପାଇଁ ହାଇଁପାଇଁ ତୁ କାହିଁ ଜାଣିବୁ ? କୃପାସିନ୍ଧୁ କହିଲା ।

କୃପାସିନ୍ଧୁ ପ୍ରକୃତରେ ଜଣେ ଉତ୍ତମ ବନ୍ଧୁ । ସନ୍ତୋଷ ତା'ଠାରେ କୃତଜ୍ଞ । ଛଅବର୍ଷ ହେଲା ସେ ବାହା ହେଲାଣି । କିନ୍ତୁ ତା ଠାରୁ ସମ୍ପର୍କ ତୁଟାଇ ଦେଇନାହିଁ କି ଦୂରେଇ ଯାଇନି । ସିଏ ହିଁ ତା'ର ଏକମାତ୍ର ବନ୍ଧୁ ସିଏ ତାକୁ ବାରମ୍ବାର ଖାଇବାକୁ ତା' ଘରକୁ ନିମନ୍ତ୍ରଣ କରୁଛି ଓ ସ୍ତ୍ରୀର ହାତରନ୍ଧା ଖୁଆଇଛି । କେବେ କେମିତି ଅଫିସକୁ ଫୋନ୍ କରି ତା'ର ଦେହପା', ଭଲମନ୍ଦ ଖବର ବୁଝୁଛି । ରାସ୍ତାଘାଟରେ ଭେଟ ହେଲେ ହୋଟେଲକୁ ଟାଣିନେଇ ଟିଫିନ୍ ଓ ଚା' ଖୁଆଇ ଗ୍ରୁଡ଼ିବ । ବାସ୍ତବିକ୍ ଜଣେ ଉତ୍ତମ ବନ୍ଧୁ ସେ ।

କୃପାସିନ୍ଧୁକୁ ସନ୍ତୋଷର ନୀରବତା ଭଲ ଲାଗିଲା ନାହିଁ । ସେ କହିଲା : କବେ, ଏମିତି ଦାରୁଭୂତ ମୁରାରି ଭଳି ବସିଗଲୁ କଣ ? ତୁ ଯଦି ବାହା ନହେବା ପାଇଁ କୌଣସି କାରଣରୁ ପଣ କରିଥାଉ, ତେବେ ମୁଁ ସେଥିରେ ଦଖଲ ଦେବାକୁ ଚାହୁଁନାହିଁ । ଯଦି ସେମିତି କିଛି କଥା ନଥାଏ, ତେବେ ଆଉ ବୟସ ଗଡ଼ାଇ ଲାଭ କଣ ? ଯେତେବେଳେ ଯେଉଁ କଥା ନା !

ସନ୍ତୋଷ ଅତି ସରଳ ଭାବେ ହସି କହିଲା : ମୋର କୌଣସି ପଣ ନାହିଁ କି କାରଣ ନାହିଁ । ତେବେ ତୁ ତ ଜାଣୁ, ମୋର ଆଗପଛରେ କେହି ନାହିଁ । ସମ୍ପର୍କୀୟମାନଙ୍କ ମଧ୍ୟରୁ କେହି ଏଯାଏଁ କିଛି ପ୍ରସ୍ତାବ ଉଠାଇ ନାହାନ୍ତି । ମୁଁ ବି ସମସ୍ତଙ୍କଠାରୁ ବହୁତ ଦୂରରେ । ଏମିତିରେ ବାହାଘରଟା ନହେଇ ରହିଯାଇଛି । ଯଦି ମନଲାଖି ଯୋଗ୍ୟ ପାତ୍ରୀଟିଏ ମିଳେ, ମୁଁ ଅବଶ୍ୟ ବିବାହ କରିବି । ହଁ, କିଛିଦିନ ତଳେ ସେମିତି ଏକ ଝିଅ ମୋର ଦୃଷ୍ଟି ଆକର୍ଷଣ କରିଥିଲା । ଚିହ୍ନାଜଣା ନଥାଇ

ସୁଦ୍ଧା ମୁଁ ତାଙ୍କ ଘରପର୍ଯ୍ୟନ୍ତ ଗୃଲିଯିବା ଭଳି ସମ୍ମୋହିତ ହୋଇ ପଡ଼ିଥିଲି । ଏମିତି ତ ହେବାକଥା ନୁହେଁ, କିନ୍ତୁ ହେଲା । ମୋର ଦୁର୍ଭାଗ୍ୟ, ସେ ଝିଅଟିର ବାହାଘର ଠିକ୍ ହୋଇ ସାରିଛି । ହୁଏତ ଏ ଭିତରେ······



ପୌଷମାସର ଆରମ୍ଭରେ ଦିନେ ସନ୍ଧ୍ୟାବେଳକୁ ଲୋକଟି ବୁଲୁଥିଲା ବସଷ୍ଟାଣ୍ଡ ପାଖରେ । ପ୍ରବଳ ଥଣ୍ଡା ପଡ଼ୁଥାଏ । କିନ୍ତୁ ତା' ଦେହରେ କୌଣସି ପଶମ ପୋଷାକ ନଥାଏ । ସେଇଠି ସେ ଦେଖିଲା ତା'ର ଜଣେ ବନ୍ଧୁ ଓ ବନ୍ଧୁପତ୍ନୀଙ୍କୁ । ସେ ଦୁହେଁ ଦେହସାରା ଏପରି ଭାବେ ଗରମ ପୋଷାକ ଭିଡ଼ି ହୋଇଥିଲେ ଯେ ଲୋକଟିର ମନେହେଲା, ସେମାନେ ନିଶ୍ଚୟ ଭ୍ଲାଦିଭୋଷ୍ଟକ ଅଞ୍ଚଳ ଆଡ଼େ ଯାତ୍ରା କରିବାକୁ ବାହାରିଛନ୍ତି । କେବଳ ପେଣ୍ଟସାର୍ଟ ଦେଇ ପିନ୍ଧି ବୁଲୁଥିବା ଲୋକଟିକୁ ଦେଖି ସେ ଦୁହିଁଙ୍କୁ ବୋଧହୁଏ ଟିକିଏ ଅପମାନ ଲାଗିଲା । ବନ୍ଧୁ ଉଚ୍ଚାରଣ କଲେ : ଉ··· ହୁ···ହୁ···ହୁ···, କି ଥଣ୍ଡା ପଡ଼ୁଛିରେ ବାବା ! ଓ ଅନ୍ୟ କୌଣସି କଥା ନ ପଗ୍ଚରି ବନ୍ଧୁପତ୍ନୀ ଜେରା କଲାଭଳି ପ୍ରଥମ ପ୍ରଶ୍ନ ହାଣିଲେ : ଆପଣଙ୍କୁ ଶୀତ ଲାଗୁନାହିଁ ?

ଲୋକଟି ଆହତ ହେଲା । ମନକୁ ହାଲୁକା କରିବା ପାଇଁ ସେ ଗହଳ ଚହଳ ଥିବା ଜାଗାରେ ବୁଲୁଥିଲା । ଅଥଚ ମନ ହେଲା ଖରାପ । ସେ ଶାଣିତ ଜବାବ୍ ଦେଲା : ଏମିତି କାହିଁକି ପଚାରୁଛନ୍ତି ? ପଚାରୁ ନାହାନ୍ତି, ଆପଣଙ୍କର କଣ କୋଟ୍ କି ସ୍ୱେଟର, ମଫଲର୍ କିଛି ନାହିଁ କି ? କିଣିବାକୁ ଟଙ୍କା ନାହିଁ ?

ନା, ଆଉ ନୁହେଁ । ଲୋକଟି ନିଷ୍ପତ୍ତି ନେଲା । ଶୀତକୁ ତ ସହ୍ୟ ହୋଇ ଯାଉଛି । କିନ୍ତୁ ମଣିଷଙ୍କ ଦାଉରୁ ରକ୍ଷା ପାଇବାକୁ ଯେମିତି ହେଉ ଉତ୍ତମ ପୋଷାକ କିଣିବାକୁ ପଡ଼ିବ । ଲୋକେ ଭାବି ନେଉଛନ୍ତି, ସେ ହୁଏତ କିଣିବାକୁ ଅକ୍ଷମ । ତାହା ଅସହ୍ୟ । ଯଦି ନିହାତି ଗରମ ପୋଷାକ

କଣାଯିବ, ତେବେ ଶୀତ ଥାଉଥାଉ କଣା ନଯିବ କାହିଁକ ? ଲୋକଟି ସେଇଠୁ ହିଁ ବଜାର ଆଡ଼କୁ ଗୃଲିଲ ।

ବଜାରରେ ବହୁତ ବଡ଼ବଡ଼ କପଡ଼ା ଦୋକାନ । ସିଲେଇ କରା ପୋଷାକ ଝୁଲୁଛି ଦୋକାନରେ । ଆଖିଠାର ମାଶ ଆମନ୍ତ୍ରଣ କଲାଭଳି କିସମ କିସମର ଉତ୍ତମ ପୋଷାକ । ଯାଉ ଯାଉ ଲୋକଟି ସେଇ ଦୋକାନ ପାଖରେ ପହଞ୍ଚିଲ ଯେଉଁଠି ଝୁଲୁଥିବା ଏକ କୋଟ୍ କଚ୍ଛଦନ ତଳେ ତା'ର ଆଖିରେ ଲାଗିଯାଇଥିଲ । କାଳେ ବଇନା ଦେଇ ଯାଇଥିବା ଲୋକଟି ଆଉ ଫେରିନଥିବ କି ! ଲୋକଟି ଦୋକାନ ଆଡ଼କୁ ଲକ୍ଷ୍ୟକଲ । ନା, କୋଟ୍‌ଟି ସେଇଠି ଝୁଲୁନାହିଁ । ତଥାପି ସେ ଦୋକାନ ଭିତରକୁ ଗଲ ଏବଂ ଆରମ୍ଭରୁ ହିଁ ଅବଶୋଷଭରା ସ୍ୱରରେ ପଚ୍ଚାରିଲ : ଆଜ୍ଞା, ସେ ଯୋଉ କୋଟ୍‌ଟା ଏଇ ଯେ ଜାଗାରେ ଝୁଲାଇ ରଖିଥିଲେ, କଚ୍ଛଦନ ତଳେ, ଗୋଟେ ନରମ ନାଳ ରଙ୍ଗର କୋଟ୍, ଜଣେ ବାବୁ ସେଇ କୋଟ୍ ପାଇଁ ବଇନା ଦେଇ ଯାଇଛନ୍ତି ବୋଲି କହୁଥିଲେ; ସେ ଆସି ସେଇ କୋଟ୍‌ଟିକୁ ନେଇଗଲେ ?

: ଓଃ କୋଟ୍ ? ସ୍କାଏ ବ୍ଲୁ ? ହଁ, ହଁ, ଅଛି । ଦୋକାନୀର ଆଖିରେ ଉଲ୍ଲାସ ।

ଲୋକଟିର ଆଖି ବି ଉଜ୍ଜ୍ୱଳ ଦେଖାଗଲା । ସେ ଭାରି ଖୁସୀ ହୋଇଗଲା । ଦୋକାନୀ ଯାଇ ଗୋଟିଏ କାଚକୁ ସରୁ୍ର କରି ଘୁଞ୍ଚାଇଲା ଓ ଭିତର ପଟୁଆଡୁ ଉଠାଇ ଆଣିଲ କୋଟ୍‌ଟିକୁ । ଆଣି ଲୋକଟିର ଆଗରେ ଥୋଇଲ । ସେଇଟି ଅବିକଳ ପ୍ରଥର କୋଟ୍‌ଭଳି ନ ଲାଗିବାରୁ ଲୋକଟି କହିଲ : ଏଇଟା ସେ କୋଟ୍ ନୁହେଁ । ତା'ର ତେଜ ଏଥିରେ ନାହିଁ । ଏଇଟା ଟିକିଏ ଭିନ୍ନ ଲାଗୁଛି । ଲୋମ୍ବକୋଷ୍ଠୁ ମଧ୍ୟ ହୋଇ-ଯାଇଚି ।

ଦୋକାନୀ କହିଲ : ରଙ୍ଗ ପକାଇ ଭିତରେ ରଖା ହୋଇଥିଲା ତ, ସେମିତି ଲାଗୁଛି । ପ୍ରକୃତରେ ଏଇଟି ସେଇ କୋଟ୍ । ଏବେ ଏଦନେ

ଅକସ୍ମାତ ଯୋର୍ ବର୍ଷା ହୋଇଗଲା, ସେଇ ଜାଗାରେ ଝୁଲୁଥିବା ଅବସ୍ଥାରେ ଏଇଟା ଭିଜିଗଲା । ସେଇଥିପାଇଁ ଟିକିଏ ଫିକା ଲାଗୁଥିବ । ଆପଣ ବେଧଡ଼କ ଏଇଟିକୁ ନିଅନ୍ତୁ । ଏଇଟି ସେଇ କୋଟ୍ । ଆପଣଙ୍କ ଦେହକୁ ବି ବଢ଼ିଆ ମାନିବ ।

ଲୋକଟି ବୁଢ଼ିଆଣୀ ଜାଲ୍ ସଫା କରିବା ଭଳି ଦୋକାନୀ ଓ ତା ନିଜ ମୁହଁ ମଝିର ଶୂନ୍ୟସ୍ଥାନରେ ଦୁଇଥର ହାତ ହଲାଇ କହିଲା : ଥରେ ବର୍ଷାରେ ଭିଜିଯାଇ କୋଟ୍‌ଟି ଏତେ ଫିକା ପଡ଼ିଗଲା ? ପୁଣି ଏପରି ଲୋଗୁକୋଗୁ ବି ହୋଇଯାଇଛି ! ଏଇଟା ସେଇ କୋଟ୍ ହିଁ ହୋଇପାରେ । କିନ୍ତୁ ଏଥିରୁ ଅନ୍ୟ ଲୋକର ଦେହର ଗନ୍ଧ ବାହାରୁଛି । ନୂଆ ଲୁଗାର ବାସ୍ନା ଏଥିରେ ଆଉ ନାହିଁ ।

କହିଦେଇ ଲୋକଟି ଯିବାକୁ ଉଦ୍ୟତ ହେଉଥିଲା । ଦୋକାନୀ ଧୀର ସ୍ୱରରେ କହିଲା : ଏତେ ଭଲ ଜିନିଷ ଆଉ ପାଇବେ ନାହିଁ । ନେଇଯାଆନ୍ତୁ । ଚାହେଁ, ଦେଢ଼ଶହ କମ୍ କରିଦେବି ।

ଲୋକଟି ଶାନ୍ତ ସ୍ୱରରେ କହିଲା : ଏତେ କାଳ ଶୀତ ଭୋଗିବା ପରେ ଯଦି ନୂଆ ଓଭରକୋଟ୍ ଖଣ୍ଡେ କିଣି ନପାରିଲି ତେବେ ମୋର ଆଉ ସାର୍ଥକତା କେଉଁଠି ? ଯଦିବା ନିହାତି ପୁରୁଣାଟିଏ କିଣେ ତେବେ ଫୁଟ୍‌ପାଥ୍‌ରେ ବସି 'ସେକେଣ୍ଡହ୍ୟାଣ୍ଡ' ବୋଲି ଘୋଷଣା କରି ଯେଉଁମାନେ କୋଟ୍ ବିକୁଛନ୍ତି, ତାଙ୍କଠାରୁ ନ କିଣିବି କାହିଁକି ? ସେମାନେ ତ ପୁଣି ନାମମାତ୍ର ଦାମ୍‌ରେ ବିକିବାକୁ ପ୍ରସ୍ତୁତ ।

ଲୋକଟି ଫେରିଗଲା ।

ସାନ୍ଧ୍ୟ ସହ ସନ୍ତୋଷର ତାହା ହିଁ ଶେଷ ସାକ୍ଷାତ ।



ହିଂ...ହିଂ...ହିଂ...ହିଂ

ସନ୍ତୋଷ ଟେଲିଫୋନ୍-ରିସିଭର ଉଠାଇଲା ଓ ଉଚ୍ଚାରଣ କଲା, ହ୍ୟାଲୋ !

ଆରପଟୁ କୃପାସିନ୍ଧୁ କହୁଥିଲା । ସନ୍ତୋଷ ଅଫିସରୁ ଫେରିଲା ବେଳେ ତାଙ୍କ ଘରକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲା । ସନ୍ତୋଷ ଗଲା ସନ୍ଧ୍ୟା ଛଅଟା ବେଳେ । ଡ୍ରଇଂରୁମ୍‌ରେ କୃପାସିନ୍ଧୁ ଓ ସୁଧନ୍ୟାଙ୍କ ସହିତ ଗପୁଥିବା ବେଳେ ଝିଅଟିଏ ଟ୍ରେରେ ଜଳଖିଆ ଧରି ଆସିଲା । ଝିଅଟିକୁ ସନ୍ତୋଷ ପୂର୍ବରୁ କେବେ ଦେଖିନଥିଲା କି କୃପାସିନ୍ଧୁ କୌଣସି ଝିଅ ସମ୍ପର୍କରେ ତାକୁ କେବେ କିଛି କହିନଥିଲା । ଭାରି ସୁନ୍ଦର ଝିଅଟିଏ । ମୁହଁରେ ବଳିଷ୍ଠ ବ୍ୟକ୍ତିତ୍ୱ ଓ ଅସମ୍ଭବ ଦୃଢ଼ତାର ଛାପ । ମାଜିବୁଜି ଶରୀର । ଯନ୍ତ୍ରର ସହିତ କୌଣସି ବିଧାତା ଗଢ଼ିଛି ପଲକ ନ ପକାଇ । ସାଢେ ପାଞ୍ଚଫୁଟରୁ ବି ସାମାନ୍ୟ ଅଧିକ ହୋଇପାରେ ତା'ର ଉଚ୍ଚତା । ସେ ଶାଢ଼ୀ ପିନ୍ଧିଥିଲା ଓ ବେଶ୍ ଢରୁଆ ଲାଗୁଥିଲା ।

କୃପାସିନ୍ଧୁ କହିଲା : ମୋ ଶାଳୀ—ସାନ୍ତ୍ୱନା । ଇତିହାସରେ ଏମ୍.ଏ. କରିବା ପରେ ଏବେ ଏମ୍. ଫିଲ୍ କରୁଛି । ଖୁବ୍ ଭଲ କ୍ୟାରିଅର୍ ତା'ର । ଆଉ ସାନ୍ତ୍ୱନା, ଇଏ ସନ୍ତୋଷ, ମୋର ବନ୍ଧୁ ।

ସାନ୍ତ୍ୱନା ସନ୍ତୋଷକୁ ସହାସ୍ୟ ନମସ୍କାର ଜଣାଇ କହିଲା, ମୁଁ ଚା' ନେଇଆସେଁ ।

ସେ ଚାଲିଯିବା ପରେ କୃପାସିନ୍ଧୁ କହିଲା : ଦୁଇ ସାଢ଼ୁଙ୍କ ମଧ୍ୟରେ ଭଲ ସମ୍ପର୍କ ରହେନାହିଁ ବୋଲି ଶୁଣାଯାଏ । ସାନ୍ତ୍ୱନା ଯଦି ତୋର ପସନ୍ଦ ହେଉଥାଏ, ତୋ ସହିତ ଉତ୍ତମ ସମ୍ପର୍କ ରଖିବାକୁ ତ ମୁଁ ଆଗ୍ରହର ସହିତ ବାଧ୍ୟ, କାରଣ ତୁ ମୋ ଶାଳୀକୁ ବାହାହେବୁ । କିନ୍ତୁ ସୁଧନ୍ୟା ତୋର ଦେଢ଼ଶାଶୁ ହୋଇଯିବେ; ତୋର ଖାସ୍ ଲାଭ ନାହିଁ । ମୁଁ କିନ୍ତୁ ବନ୍ଧୁଭାବେ ତତେ ହରାଇବାକୁ ଚାହେଁନା । ସମ୍ପର୍କ ଅତୁଟ ରଖିବାର ପ୍ରତିଶ୍ରୁତି ଯଦି ଦେବୁ ତେବେ ସାନ୍ତ୍ୱନା ସାଙ୍ଗରେ ତୋର ବାହାଘର ପାଇଁ ମୁଁ କଥାବାର୍ତ୍ତା କରିବ ।

ସୁଧନ୍ୟା ଏକଲୟରେ ସନ୍ତୋଷର ମୁହଁକୁ ଚାହିଁଥିଲେ । ସେ ବୋଧହୁଏ ନିଶ୍ୱାସ ବନ୍ଦ ରଖିଥିଲେ । କୃପାସିନ୍ଧୁ ତା'ର ଆଙ୍ଗୁଠି ଗୁଡ଼ିକୁ ଫଟ୍‌ଫାଟ୍ ଫୁଟାଇଲା । ସେତିକିବେଳେ ଅନ୍ୟ ଏକ ଟ୍ରେରେ ଚା'କପ୍ ସଜାଇ ରଖି ସାନ୍ତ୍ୱନା ସେମାନଙ୍କ ପାଖକୁ ଆସିଲା । ସାମ୍ନା କାନ୍ଥରେ ଟଙ୍ଗାଯାଇଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ପ୍ରଶସ୍ତ ବନ୍ଧେଇ କରା ଛବିଟିକୁ ଲକ୍ଷ୍ୟ କରୁକରୁ ସନ୍ତୋଷ ମୁହୂର୍ତ୍ତେ ଆଖି ବୁଜିଦେଲା । ସାନ୍ତ୍ୱନା କପ୍‌ଟି ତା' ଆଡ଼କୁ ବଢ଼ାଇ ଧରି କହିଲା : ଚା' ନିଅନ୍ତୁ ।

ସନ୍ତୋଷ ଆଖି ଖୋଲି କହିଲା : କୃପାସିନ୍ଧୁକୁ ଦିଅ ।

ସୁଧନ୍ୟା ଟ୍ରେରୁ ଆଉ ଗୋଟିଏ କପ୍ ଉଠାଇ କହିଲେ : ଓହୋ, ମୁଁ ତାଙ୍କୁ ଦେବି ନାହିଁ ? ତମେ ନିଅ । ଯାହାଠାରୁ ଯିଏ ଯାହା ପାଇବା କଥା ନା !



# ଭାଇ

ଏଣିକି ଭାଇର ପକେଟରେ ସିଗାରେଟ ରହୁଲାଣି । ମୋର ଇଚ୍ଛା, ମୁଁ ମା'ଙ୍କୁ କହିଦିଅନ୍ତି । ବାପାଙ୍କ ସାମ୍ନାକୁ ତ ଯାଇହୁଏନି । ମା'ଙ୍କ ସହିତ ଗପସପ, ଆଲୋଚନା କରିହୁଏ । ମୁଁ ନ କହିଲେ କେହି କିଛି ଜାଣି ପାରିବେନି । କାରଣ ମୁଁ ଜାଣେ, ମା' କେବେ ଭାଇର ଜାମା ମୁଣାକୁ ହାତ ଦିଅନ୍ତି ନାହିଁ । ଏଥର କି ଭାଇ ଚାକିରି କଲାଣି । ଅଥଚ ଘର ପାଇଁ, ଚାକିରି କରୁଥିବା ଜଣେ ଅବିବାହିତ ପିଲା ଯେପରି ଖର୍ଚ୍ଚ କରିବା କଥା ସେମିତି କରିବ କଣ, ବିଲ୍‌କୁଲ୍ କିଛି ପ୍ରାୟ ଖର୍ଚ୍ଚ କରେ ନାହିଁ କହିଲେ ଚଳେ । ତେବେ ବି ମା ଜାଣିବାକୁ ଚାହାଁନ୍ତି ନାହିଁ, ସିଏ କେତେ ପାଇଲା, କେତେ ଖର୍ଚ୍ଚ କଲା କେଉଁ ବାଟରେ । ଦେଖିବାକୁ ବି ଚାହାଁନ୍ତି ନାହିଁ, ତା ପାଖରେ ଆଉ ଅବଶିଷ୍ଟ କେତେ ଅଛି : ତେଣୁ ମା'ତ ନିଜେ ଜାଣିପାରିବେ ନାହିଁ; ମୋର ଇଚ୍ଛା; ତାଙ୍କୁ କହିଦିଅନ୍ତି : ମା, ଜାଣିଛ ? ଭାଇ ସିଗ୍ରେଟ୍ ପିଇବା ଆରମ୍ଭ କରିଦେଇଚି । ଆହୁରି କହିଥାନ୍ତି, ବୋଧହୁଏ ଅନେକଦିନୁଁ ଲୁଚି ଟାଣିବା ଆରମ୍ଭ କରି, ଏବେ ଅମଳ କରି ସାରିଲାଣି ।

କିନ୍ତୁ କହିଦେଲେ କଥାଟା ପ୍ରକଟ ହୋଇଯିବ ! ମା ନିଶ୍ଚୟ ଏକଥା ଭାଇକୁ ପଚାରିଦେବେ ! ଗାଳି ଦେବେନି; କିନ୍ତୁ ବିରକ୍ତ ହେବେ । ପୂର୍ବେ ତାର କିଛି ଭୁଲ୍ ଦେଖିଲେ କହୁଥାନ୍ତି, ରହ, ବାପାଙ୍କୁ ଏଥର ଯଦି ନ କହିଚି···ମୁଁ କ୍ଷମାପାଇଛୁ କହିବାକର ହିଁଅ ନୁହେଁ । ଏମିତି

କହନ୍ତି ସିନା, ବାପାଙ୍କୁ କହିବାକୁ ଭୁଲିଯାଆନ୍ତି ଯଦିଓ ମୋ ଅଜାଙ୍କ ନାଁ କୃପାସିନ୍ଧୁ ଓ ସେ ଜଣେ ନାମୀ କବିରାଜ ଥିଲେ । ତେବେ ଆଜିକାଲି ଭାଇକୁ ମା ଆଉ ସେମିତି ଧମକ ମଧ୍ୟ ଦେଉନାହାନ୍ତି । ଅଥଚ ନିଜେ ବିରକ୍ତ ହୁଅନ୍ତି ଖୁବ୍ । ଅନେକ ସମୟରେ ଉତ୍ତେଜନାବଶତଃ କାନ୍ଦି ପକାନ୍ତି । ତାଙ୍କୁ କାନ୍ଦିବା ଦେଖିଲେ ମୋ ମନ ଭାରି ଖରାପ ହୋଇଯାଏ । ଦୁଃଖ ହୁଏ, ଭାଇର ଗୋଟେ ଗୋଟେ ଅଜବ ପରିବର୍ତ୍ତନ ଦେଖିଲେ । ପରିବର୍ତ୍ତନ, ଯାହାକିଛି ବି, ଭଲ ଦିଗରେ ହେଉ କି ମନ୍ଦ ଦିଗରେ; ଏଇଲେ ତ ଆମ ଘରକୁ କି ଶନିଦଶା ଗୋଡ଼େଇଛି ଯେ ଭଲମନ୍ଦ ଉଭୟଟା ହିଁ ଆମପାଇଁ ମନ୍ଦ ପାଲଟି ଯାଉଛି । ଯେମିତି ଭାଇ ଏଇନା ପକେଟରେ ସିଗାରେଟ, ନଆଁ ପେଡ଼ି ଧରି ବୁଲିଲଣି, ଆଉ ତ କାହାକୁ ଖାତିର୍ କରୁଥିବା ଭଳି ଜଣା ପଡୁନି । ଏଣେ କଣ ନା ମୋର କୋଉଠି ଟିକିଏ ଗ୍ରେଟିଆ ଭୁଲ୍ ଦେଖିଲେ ଧଡ଼ିକେଇ ଦେବ । ପଚାରିବ, ପାଠ ପଢ଼ା ସାରିବା ପରେ ଗୃହକାର୍ଯ୍ୟକରି ଭଲଲୋକଙ୍କ ପରି ଜୀବନ ବିତାଇବା ଇଚ୍ଛା ଅଛି, ନା, ବେକାର ହୋଇ ଲଙ୍ଗଳାଙ୍କ ଭଳି ଦଉଡ଼ିଦଉଡ଼ି ବୁଲିବାକୁ ?

ଅଥଚ ଭାଇ ନିଜେ ଗୃହକାର୍ଯ୍ୟ କରିବା ପୂର୍ବରୁ ଯେ ବେକାର ଥିଲା, ତାହା ମାନୁନଥିଲା । କହୁଥିଲା, ଯିଏ ଗୃହକାର୍ଯ୍ୟ କରୁନି ସିଏ ଯେ ବେକାର, ଏମିତି ତ କୁହାଯାଇ ପାରିବ ନାହିଁ । ଜଣେ ବ୍ୟବସାୟ କରିପାରେ, ଗୃହବାସ କରିପାରେ । କିଛି ଗୋଟେ କରୁଥିବା କଥା । ଲୋକେ ଟାଉଟରି କିମ୍ବା ନେତାଗିରି କରି ମଧ୍ୟ ବେକାର ନୁହନ୍ତି । ମୁଁ ତ ନାଟକରେ ଅଭିନୟ କରିବାଭଳି ଏକ ସାଂସ୍କୃତିକ କାର୍ଯ୍ୟରେ ବ୍ୟସ୍ତ । ଆମ ପ୍ରଦେଶରେ ସିନା ମଞ୍ଚ ଅଭିନେତାମାନେ ଦୁଃସ୍ଥ । ଅନ୍ୟଠି ତ ଏତିକି ଅଭିନୟ କରି ଲୋକମାନେ ହଜାର ହଜାର ଟଙ୍କା ରୋଜଗାର କରୁଛନ୍ତି; ପରିବାର ଚଳାଉଛନ୍ତି । ତା'ଛଡ଼ା ପାଠ ପଢ଼ୁଥିବା ପିଲାଙ୍କ ପରି ମୁଁ ବି କିଛି ଶିଖୁଛି । ବେକାର କାହିଁକି ହେବ ?

ଭାଇ ଭଲ ଅଭିନୟ କରୁଥିଲା । ସହରରେ ନାଁ ମଧ୍ୟ ଥିଲା । ତାର ଅଭିଳାଷ ଥିଲା, କାରାଟେ କୁଙ୍ଗ୍ଫୁ ଓ ଡ୍ୟାନ୍ସ ଶିଖିଯାଇ ସେ

ସିନେମାରେ ପଶିଯିବାକୁ ଚେଷ୍ଟା କରିବ । ସେ ଦିଗରେ ଖୁବ୍ ଆଗ୍ରହ ନେଇ ଲାଗିଥିଲା ମଧ୍ୟ । ଅବଶ୍ୟ ଗ୍ରୁହଣ୍ଡ କରିବା ପୂର୍ବରୁ । ବାପାଙ୍କ ଦରମାରୁ ଘରର ମାଛ ମାଂସ ବାବଦରେ ଖର୍ଚ୍ଚ ହେବାକୁ ଥିବା ପଇସା ତାର ବାଜେ ଖର୍ଚ୍ଚରେ ଲାଗୁଥିଲା । ମା ପ୍ରତିଥର ଯୁକ୍ତି କରୁଥିଲେ ଓ ବାପା ମାନି ନେଉଥିଲେ, ତାହା ମଧ୍ୟ ଘରର ଏକ ଅତ୍ୟାବଶ୍ୟକ ଖର୍ଚ୍ଚ ! ମାଛ, ମାଂସ ନ ଖାଇଲେ କି ତରକାରି ଗୋଟିଏ କମାଇ ଦେଲେ ବି ଚଳିଯିବ । ଏହାଛଡ଼ା, ଭାଇର ଘରକୁ ଫେରିବା ଉପରେ ବି କିଛି କଟକଣା ନଥିଲା । ସେ ଯେତେ ରାତିରେ ବି ଘରକୁ ଫେରିଲେ ମା ଚେଇଁରହି ଅପେକ୍ଷା କରୁଥିଲେ; କିଛି କହୁନଥିଲେ । ଯାବତୀୟ କଟକଣା, ନାଲିଆଖି ସତେ ଯେମିତି କେବଳ ମୋ ପାଇଁ ହିଁ ଗଚ୍ଛିତ ରହୁଥିଲା ।

ମା ଚାହିଁଥିଲେ ଭାଇକୁ ବର୍ତ୍ତମାନ ଅପେକ୍ଷା ଅଧିକ ଭଲ ମଣିଷ କରିପାରିଥାନ୍ତେ । ପ୍ରତିଥର ବାପା ଭାଇର ଗୋଟେ ନୂଆ ଖୋଇ ବିଷୟରେ ଜାଣିଲା ବେଳକୁ ଯଥେଷ୍ଟ ଡେରି ହୋଇଯାଇଥାଏ । ବାପା ମା'ଙ୍କୁ କହନ୍ତି : ଏତେଦିନ ହେଲାଣି···ମତେ (!) ଏଯାଏଁ ଲୁଚାଇଥିଲ । ଦିଅ, ପୁଅକୁ ଅଭୟ ଦିଅ । ଘଣ୍ଟ ଘୋଡ଼େଇ ରଖ । ଏମିତିକା ପିଲା, ଖାଲି ଆୟୁଷ ଅଛି ବୋଲି ସଂସାରରେ କେମିତି ଚଳିଯିବ, ବଞ୍ଚିଥିଲେ ଦେଖିବନି କି !

ଏଇନେ ମୁଁ ମାଙ୍କୁ କହିଦେବି, ଭାଇ ସିଗ୍ରେଟ୍ ଟାଣୁଛି । ତା'ପରେ ? ଭାଇ ପଦାରେ ପଡ଼ିଯିବା ବ୍ୟତୀତ ଅଧିକ କଣ ଲାଭ ହବ ? ସେଇଠୁ ଭାଇ ନିଶ୍ଚୟ ଜାଣିବ (ସେ ସବୁବେଳେ ମତେ ସନ୍ଦେହ କରେ) ମୁଁ ହିଁ ମାଙ୍କୁ କହିଚି । ଆସିବ ମୋ ପାଖକୁ । ହିନ୍ଦୀ ସିନେମାର ଭିଲେନ୍ ଭଳି ଠିଆହେବ । ଚେହେରାଟା ସିନା ସାଜୁନି, ନହେଲେ ସତରେ ସିଏ ସିନେମାରେ ବି ଅଭିନୟ କଲେ ଭଲ କରନ୍ତା । ପଚାରିବ : ଆନନ୍ଦ ! ଗୁଣ୍ଡା ଦରକାର ପଡ଼ୁଛିକିରେ !

: କି କଥା ? ମୁଁ କଣ ଗଣେଶପୂଜା ହେଉଚି ? ନା, କିଛି ଗୋଟେ ଯୁବ ସାଂସ୍କୃତିକ ପରିଷଦ ? ତୁ ମୋ'ର ବଡ଼ଭାଇ । ବଡ଼ ବୋଲି, ମାନି

ଛଅବର୍ଷ ତ ! ମୁଁ ବି ହେଇ ବି.ଏ. ପରୀକ୍ଷା ଦେବି ଏବର୍ଷ । ମୁଁ ଆଉ କେତେ ଶ୍ରେଷ୍ଠ କି ? ବଡ଼ ଭାଇ ହିସାବରେ କେବେ କେମିତି ତୁ ମୋ ପାଇଁ ପେଣ୍ଟ୍ ସାର୍ଟ ହଲେ କରିଦେଲୁ ବା ଭଲ ଯୋଡ଼ା ଦି'ଟା କିଣି ଦେଇଥିବୁ ଯେ, ଭାଇ ହେଇ ସୁଦ୍ଧା, ଅଭାବରେ ପଡ଼ିଥିବା ଗୋଟେ ଗୃହସ୍ଥ ଇତର ଗୃହ୍ନା ଅସୁଲକାରୀଙ୍କୁ କହିବା ଭଳି କହିବୁ ?

ଏମିତି କିଛି କହିଦେଲି ଯଦି, ସେ କହିବ : ଭାରି ...କଣ ଜବାବ ଦେଇ ଶିଖିଲୁଣି । ଏଗୁଡ଼ାକ ସବୁ କଣ ସେ ଲଜିକ୍, ଫିଲସଫିରେ ପଢ଼ା ହେଉଛି ?

ତାହା ଶୁଣି ମତେ ଅପମାନ ଲାଗିବ । ମୁଁ କାହିଁକି ଛାଡ଼ିବି ? ମୁଁ କଣ ଶ୍ରେଷ୍ଠ ପିଲା କି ? ଲଜିକ୍ ମୋର ପ୍ରିୟ ବିଷୟ ହେଇଥିବାରୁ ବି.ଏ.ରେ ମୁଁ ଫିଲସଫି ଅନର୍ସ ପଢ଼ିଲି । ଭାଇ ଚାହୁଁଥିଲା, ମୁଁ ଇକନମିକ୍ସ ଅନର୍ସ ପଢ଼ିଥିଲେ ଭଲ ହେଇଥାନ୍ତା । ତାକଥା ମାନିଲିନି ବୋଲି ଏମିତି ଆକ୍ଷେପ କରିବ ? ସେ ଫିଲସଫି ବିରୁଦ୍ଧରେ କହିଲେ ମୁଁ କହେ : ତୁ ଯେଉଁ ବିଷୟ ପଢ଼ିନୁ, ସେ ସବୁ ଯେ ଖରାପ ଏମିତି ତ କିଛି ମାନେ ନାହିଁ । ଜଣେ ଡାକ୍ତର ଯେମିତି 'ଭାତ ଖାଇବ' କହିବାକୁ ଦି'ଶ୍ରହଟା ରୋଗ କି ଔଷଧର ନାଁ କହି ନିଜ ଇଚ୍ଛା ପ୍ରକାଶ କରେନା, ମୋର ଯାହା ଶିଖିବା କଥା, ଯାହା କହିବା କଥା, ତାହା ଫିଲସଫି ନ ପଢ଼ିଥିଲେ ବି ମୁଁ କହିଥାନ୍ତି । ମୁଁ ତ ଏମ୍.ଏ. ପଢ଼ିବା କଥା ଭାବୁଛି, ଫିଲସଫିରେ ।

ଗୋଟେ ଭଲକଥା, ଭାଇ ମୋର ଯୋଜନାକୁ ସମ୍ମାନ ଦିଏ । ସମଭାବାପନ୍ନ ହୋଇ ବିଚାର କରେ । ଉତ୍ତରରେ ନାରାଜ କରେନା । ...ଚଟ୍ କରି ବୁଝିଯାଇପାରେ ମଧ୍ୟ ଅନ୍ୟର ମନର କଥା । କିନ୍ତୁ ଅନେକ ସମୟରେ କାହାର ମନକଥା ବୁଝି ପକାଇବା ମାନେ ଭୁଲେଇଦିଏ । 'ଏମିତି ଓସ୍ତାଦ ମାରିମାରି ତ 'ସାରା ପୃଥିବୀ ଏକ ରଙ୍ଗମଞ୍ଚ' ମନ୍ତ୍ର ଘୋଷିଘୋଷି ଜୀବନଟାକୁ ଗୋଟିପୁଅ ନାଚ ଦେଖାଇବାକୁ ବସାଇଦେଇ ବୁଲୁଥାଏ ।

ପ୍ରଭୃତିର ମନ୍ତେ ନ ପାରିଲେ, ଚେଷ୍ଟା କଣ ହେଲେ କ୍ଲୋଭ ଦେଖାଇ ଚୁପ୍ କରିଦିଏ । ମୁଁ ମଧ୍ୟ ଟିକିଏ ପୋଷାକକ୍ଳାନ୍ତି ବୋଲି ସବୁଥିର ମତେ ଉଦ୍‌ଘୋଷିବ, ଗୁନ୍ଦା ଦରକାର କରୁଚ ବୋଲି ଅପମାନ ଦେଇ ?

ଏଥର କନ୍ତୁ କଥାଟା ଟିକିଏ ଉଲ୍ଟା । ସିଏ ସିଗ୍ରେଟ୍ ପିଉଥିବା କଥା ପଦାରେ ପଡ଼ିଗଲେ ଜିତାପଟ ତାର । ସାଙ୍ଗେ ସାଙ୍ଗେ ପଚାରି ଦେବ : ମୋ ପକେଟ୍‌ରେ ହାତ କାହିଁକି ପୂରାଇଲୁ ?

ସତକଥା, ସିଏ ଗୁନ୍ଦକଷ କଲାଠୁଁ ମୁଁ ଆଉ ତା' ପକେଟରେ ପୂର୍ବଭଳି ବିଶେଷ ହାତଫାତ ପୂରାଏ ନାହିଁ । କାଁ ଭାଁ । ମା'ବି ମତେ ମନା କରିଛନ୍ତି । ମୁଁ ମା'ଙ୍କର ଗୋଟେ ଗୋଟେ କଥା ମାନେ । ପୂର୍ବେ ସିନା, ଭାଇ ଗୁନ୍ଦକଷ କରିବା ପୂର୍ବରୁ ବଡ଼ଭଲ ଆଳ ଦେଖାଇ ବାପାଙ୍କ-ଠାରୁ ନେଇଥିବା ଟଙ୍କାରୁ, କେବେ କେମିତି ଟଙ୍କେ, ଦୁଇଟଙ୍କା ମାରି ଦେଉଥିଲି । ଏଇନା ତ ମୋର ଆଉ ସେ ବାଜେ ଅଭ୍ୟାସ ନାହିଁ । ଭାଇ ଟଙ୍କା ମାଗିଲେ ବାପା ପ୍ରାୟ ଦେଉଥିଲେ । ମୁଁ ମାଗିଲେ ଦିଅନ୍ତି ନାହିଁ । ଭାଇ ମାଙ୍କ ମାଧ୍ୟମରେ ଟଙ୍କା ମାଗେ କୌଣସି ଜରୁରୀ ଖର୍ଚ୍ଚର ବାହାନା ଦେଖାଇ । ମୁଁ ସିଧା ବାପାଙ୍କୁ ମାଗେ । ବାପା ନଦେଲେ ଭାଇର ପକେଟରୁ ଅଳ୍ପକିଛି କାଢ଼ିନିଏ । ମୋର କାମ ଚଳିଯାଏ । ଭାଇ ଜାଣିଲେ ମଧ୍ୟ ଅବଶ୍ୟ ଗାଳି ଦିଏନା । କନ୍ତୁ କହେ : ମାଗିକି ନଉନୁ ?

ଭାଇକୁ ଗୋଟେ ପଇସା ମଗାଯିବା ଭଳି ସିଏ ହେଲାଣି ନା ? ନଜେ ତ, ବାପା କେବେକେବେ ତାକୁ ପଇସା ନଦେଲେ ବା ଦେବାରେ ବିଳମ୍ବ କଲେ ତାଙ୍କ ପକେଟରୁ ନେଇ ଯାଉଥିଲା । ଘରେ ଆମେ ସମସ୍ତ ଜାଣିଗଲେ ବିରକ୍ତ ହେଉଥିଲା । ଅଥଚ ମତେ କହୁଥିଲା ମାଗିକି ନେବା ପାଇଁ । ମୁଁ ଅବଶ୍ୟ ତାର ସେ ଦୋଷ ଦେଖାଇ ତାକୁ କେବେ ଲଜ୍ଜିତ କରିବାକୁ ଚେଷ୍ଟା କରିନାହିଁ । ସେ ବି ଲଜ୍ଜିତ ହେବାଭଳି ପିଲା ନୁହେଁ । ତଥାପି କେବେକେବେ ସଚେତନତା ବଶତଃ କହି ହେଉଥିଲା, ମୁଁ ଯାହା କହୁଚ ତାହା କର, ମୁଁ ଯାହା କରୁଚ ତାହା ନୁହେଁ । ଏକଥା କୁଆଡ଼େ ମହାତ୍ମାଗାନ୍ଧୀ କହିଥିଲେ ! ହ୍ୟାତ୍ ! ଗାନ୍ଧିଜୀ କାହିଁକି ଏକଥା

କହିବାକୁ ଯିବେ ? ସେ ତ ଯାହା କରୁଥିଲେ ସବୁ ଠିକ୍ ହିଁ କରୁଥିଲେ ଓ ଯାହା କରୁଥିଲେ ତାହା ହିଁ କହୁଥିଲେ । ଭାରତର ସ୍ୱାଧୀନତା ଆଣିବ ବୋଲି କହିଲେ । ଆଣିଲେ ମଧ୍ୟ । ହିନ୍ଦୁ ମୁସଲମାନ ଭାଇ-ଭାଇ ଓ ଈଶ୍ୱର, ଆଲ୍ଲା ଜଣେ ହିଁ ପ୍ରଭୁଙ୍କର ଦୁଇଟି ନାମ ବୋଲି କହିଲେ ଓ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ମଧ୍ୟ ସ୍ଥାପିତ ହୋଇଗଲା ଓ ଈଶ୍ୱର ସହାସ୍ୟ ବଦନରେ ଆଲ୍ଲାଙ୍କ ଭିତରେ ଲୀନ ହୋଇଗଲେ । ହରିଜନ ପ୍ରଥା ଉଠିଯାଉ ବୋଲି ସେ କହିଲେ ଓ ସେ ଘୃଣ୍ୟ ପ୍ରଥା ଉଠିଯିବା ପରେ ଯାଇ ମୃତ୍ୟୁବରଣ କଲେ । ନିଜେ ପ୍ରଥମେ ହାତରେ ସୂତାକାଟି, ଲୁଗାବୁଣି ଆଣ୍ଠୁ ଲୁଚୁନଥିବା ଲୁଗା ପିନ୍ଧିଲେ ଓ ପରେ ଲୋକମାନଙ୍କୁ ନିବେଦନ କଲେ ଦେଶର ଦାରିଦ୍ର୍ୟକୁ ଦୃଷ୍ଟିରେ ରଖି ଖଦଡ଼ ପିନ୍ଧିବା ପାଇଁ ! ସେ କଣ ଭାଇଭଳି ସାଧାରଣ ମଣିଷ ହୋଇଛନ୍ତି ଯେ ଯାହା କହିବେ ତାହା ନିଜେ କରି ଦେଖାଇବେ ନାହିଁ; କେବଳ ଭୁଲେଇ ଦେବେ !

ଭାଇ ଚୁକସ୍ତ କଲାଠୁ ମାଗିବା ତ ଦୂରର କଥା, ମୁଁ ତା ପକେଟରେ ହାତ ପୂରାଇଲେ ସୁଦ୍ଧା, ସେ ରଖିଥିବା ଟଙ୍କା ସବୁ ଗଣିସାରି ପୁଣି ସେମିତି ରଖିଦିଏ । ଟଙ୍କା ଗଣିବାକୁ ମତେ ଭଲଲାଗେ । କିନ୍ତୁ ମୁଁ ଆଉ ସେଥିରୁ ଖଣ୍ଡିଆ କରେନି । ମୁଁ ଏତେ ଭଲପିଲା ହୋଇସାରିବା ପରେ ବି, ବିନା ଦୋଷ, ବିନା କାରଣରେ ମତେ ସିଏ ସନ୍ଦେହ କରି ବସିଲେ, ମୁଁ କାହିଁକି ସହିବ ?

ମା'ଙ୍କର ମୋ ଉପରେ ଅଗାଧ ବିଶ୍ୱାସ । ସେ ଜାଣନ୍ତି ଭାଇ ଆଉ ତାଙ୍କ ଅକ୍ତିଆରରେ ନାହିଁ । ତା' ଉପରୁ ତାଙ୍କର ଅଧିକାର କମିଯାଇଥିବା ପରି ସେ ମନେ କରନ୍ତି । ଏବେ ତା' କଥା ଖୁବ୍ ବେଶି ସେ ଆଉ ଭାବୁ ନାହାନ୍ତି । ଭାଇ ଚାହିଁଲେ ଯେ କୌଣସି ଦିନ ଦିଲ୍ଲୀ ପଳେଇ ପାରୁଚି । ପଳେଇ ପାରୁଚି ମହୀଶୂର, କାଶ୍ମୀର ବା ନେପାଳ । ରହିଯାଇ ପାରୁଚି ବାହାରେ ସପ୍ତାହେ, ଦଶଦିନ କିଛି ଖବର ନଦେଇ । ଏଇ ସହରରେ ଥିବ । ଅଥଚ ଘରକୁ ଫେରିବ ନାହିଁ । ମା' ଅପେକ୍ଷା କରିଥିବେ । ଅଥଚ ପରଦିନ ସେ ଫେରିଲେ ତାକୁ କିଛି କହିବେ

ନାହିଁ । କୁଆଡ଼େ ଯାଇଥିଲୁ, କୋଉଠି କଣ କଲୁ, ଖରାପ ନା ଭଲ କିଛି ପଚାରିବେ ନାହିଁ । ବରଂ ମୋଠାରୁ ହିଁ ଭାଇ ସମ୍ପର୍କରେ ମା ଅନେକ କଥା ଜାଣନ୍ତି । ଭଲକଥା ହୋଇଥିଲେ ତ କିଛି କଥା ନାହିଁ, କିନ୍ତୁ ଖରାପ କଥା ଶୁଣିଲେ ମା କାନ୍ଦିପକାନ୍ତି । ମା କାନ୍ଦିବସିଲେ ମତେ ଭଲ ଲାଗେନା । ସେ କାନ୍ଦନ୍ତି ମାନେ କଣ କି, କଥା କହୁକହୁ ତାଙ୍କ ଆଖିରୁ ଲୁହ ବୋହିଆସେ ।

ତଥାପି ମୁଁ କହିଦେଲି : ମା, ଜାଣିଚ ? ଭାଇ ଆଜକାଲି ପକେଟରେ ସିଗ୍ରେଟ ଧରି ବୁଲିବା ପରି ସିଗ୍ରେଟ ପିଆଳି ହୋଇଗଲାଣି । କଥାଁ ପେଡ଼ି ବି ରଖିଚ ।

କହିଦେବା ପରଠାରୁ ମୁଁ ଖୁବ୍ ସତର୍କତାର ସହିତ ଭଦ୍ରଲୋକ ପରି ଥିଲି । କାରଣ ତା'ପରେ ମୋ ଅବସ୍ଥା ମୁଁ ବେଶ୍ ଅନୁମାନ କରି ପାରୁଥିଲି । ପ୍ରାୟତଃ ମୁଁ ଗମ୍ଭୀର ଥାଏ । ଭାଇକୁ ଦେଖିଲେ ମୋର ଗାମ୍ଭୀର୍ଯ୍ୟ ଆହୁରି ବଢ଼ିଯାଏ ଓ ଆଖି ବନ୍ଦକରି ଗୁଣୁଗୁଣୁ ହୋଇ ଗୀତ ଗାଇବାକୁ ମୋର ଇଚ୍ଛାହୁଏ । ଏପରିକି ଭାଇକୁ ଆଭଏଡ୍ କରିବା ପାଇଁ, ଅନେକ ଥର, କାନ୍ଥକୁ ଲାଗି ପଡ଼ିଥିବା ଟେବୁଲ ପାଖରେ ବସି କାନ୍ଥଆଡ଼କୁ ମୁହଁ କରି ଗଭୀର ଅଧ୍ୟୟନରେ ବି ମଗ୍ନ ରହିଲି । ମା'ତ ନିଶ୍ଚୟ ଭାଇକୁ କିଛି ନା କିଛି ଶୁଣାଇଥିବେ । ଭାଇ ମତେ ଜବତ୍ କରିବାକୁ ମଉକା ଖୋଜୁଥିବା କଥା ମାଲୁମ କରିବାକୁ ମତେ ବା କେତେଘଡ଼ି ଲାଗନ୍ତା ? ମୁଁ ସବୁ ବୁଝି ସାରିଥାଏ ଓ ଭାଇ ମଉକା ନପାଇ କେମିତି ଗୁରି, ଛ'ଦନ ଗଡ଼ିଯିବ ସେଇ କୌଶଳରେ ଥାଏ । କିନ୍ତୁ ଆଉ ହୋଇପାରିଲା ନାହିଁ । ଥରେ ବାପା ଘରେ ନଥିବା ବେଳେ ଓ ମା' ପାଖଘରର ମାଉସୀଙ୍କ ସହ ତାଙ୍କ ଘରେ ବସି ଗପୁଥିବା ବେଳେ ମୁଁ ବିପଦ ଆଶଙ୍କା କରି ଖୁବ୍ ମନ ଦେଇ ପାଠ ପଢ଼ୁଥିଲି; ଭାଇ ଆସି ପଚାରିଦେଲା : ନିଜକୁ ଭାରି ଗୋଟେ ଗୁରୁଜନ ବୋଲି ତୁ କାହିଁକି ଭାବୁ ?

ମୁଁ କିଛି ନକହି କିଛି ସମୟ ସମ୍ଭାଳିଗଲେ ସେ ସବୁଥର ତାର ପ୍ରଶ୍ନ ଦୋହରାଏ । ସେ ତୃଷ୍ଣାପୂର୍ବରି ତାର ଧୈର୍ଯ୍ୟଚ୍ୟୁତ ଘଟିଥିବା ପରି

ପଚାରିବା ପରେ ଆଉ ଚୁପ୍ ରହିବା ମୋର ଉଚିତ ମନେ ହେଲା ନାହିଁ । କହିଲି : ମୁଁ ଏତେକଥା ଭାବେନା ।

ସେ ପଚାରିଲା : ମାନେ ?

ମୁଁ କହିଲି : ମୁଁ କୌଣସି ଅବାନ୍ତର କଥା ଭାବେନ ।

ତା'ପରେ ସ୍ୱାଭାବିକ ଭାବରେ ଆମର କଥା କଟାକଟି, ଯୁକ୍ତିତର୍କର ଶଢ ବାହାରକୁ ଗଲା ଓ ମା' ଆସିଲା ବେଳକୁ କଥା ଆଉ ତଳ ଅଦାଲତରେ ନାହିଁ । ମୁଁ ମୋର ସମ୍ପୂର୍ଣ୍ଣ ଦମ୍ ଓ ବିଦ୍ୟା ଖଟାଇ ସଂଗ୍ରାମ ଧରିରଖିଛି । ଭାଇ କହୁଛି : ମୁଁ ମୋର ଲ୍ୟାବୋରେଟୋରୀରେ ବି ହେଉପଛେ ଯାହା କଲେ ସୁଦ୍ଧା ତୋର ସେଥିରେ ମୁଣ୍ଡ ଖେଳାଇବା କଣ ଦରକାର ପଡ଼ୁଛି ?

ମା ଆସିଲେ ବି ହଠାତ୍ ହସ୍ତକ୍ଷେପ କରନ୍ତି ନାହିଁ । ଆମକୁ ଅତିକ୍ରମ କରି ଚାଲିଯାଆନ୍ତି ଓ ଭିତର ଘରକୁ ଯାଇ ବାରମ୍ବାର ଫେରନ୍ତି ଏବଂ ଆମକୁ ଦେଖାଦିଅନ୍ତି । ପୁଣି ଚାଲି ଯାଉଥାନ୍ତି । ଆମେ ତ ଆଉ ଛୋଟପିଲା ନୋହୁଁ । ତେଣୁ ଆମେ ବନ୍ଦ ହେଉନା । ମୁଁ କିନ୍ତୁ ମା'ଙ୍କୁ ଦେଖି ଜାଣିଗଲି, ଆଉ ବେଶି ସମୟ ନୁହେଁ । ଅତିଶୀଘ୍ର ହୁଏତ ମା' ଆସି ଆମ ମୁହଁ ବନ୍ଦ କରିଦେବେ । ଦୁହିଁଙ୍କୁ ଟାଣିନେଇ ଅଲଗା କରିଦେବେ । ତେଣୁ କହି ପକାଇଲି : ତୁ କାହିଁକି ଭାବୁଛୁ ଯେ ତୁ ଏମିତି ବି କିଛି କାମ କରିପାରୁ ଯାହା ସମ୍ପୂର୍ଣ୍ଣ ନୂଆ କାମ ଓ ସ୍ୱତନ୍ତ୍ର ଭାବେ ତୋ ଦ୍ୱାରା ହିଁ ହୁଏ, ଯାହା ଅନ୍ୟ କେହି ନଜାଣିଥିବେ ? ପୃଥିବୀରେ; ଲ୍ୟାବୋରେଟୋରୀରେ ବି ହେଉପଛେ, କେହି ନଜାଣିଥିବା ଭଳି କଣ ଏମିତି ନୂଆ କାମ ବା ତୁ କରୁଚୁ ଯେ ଏତେ ଦମ୍ଭରେ ପ୍ରଶ୍ନ ପଚାରୁଚୁ ?

ମୋର ସାହିତ୍ୟ ଭଲ ହୁଏ ଓ ମୁଁ ଅନେକ ବହି ପଢ଼ିଛି ବୋଲି ଭାଇର ଏକ ଈର୍ଷାମୟ ଭାବନା ଯେ, ମୁଁ ଯାହା କଲେ ତାହା କଥା ନୁହେଁ, କୋଉ ହେଲେ ବହିରୁ ମୁଖସ୍ଥ କରାଯାଇଥିବା କୋଟେସନ୍ । କହିଲି : ତୋର ସାହିତ୍ୟରେ ଆଗ୍ରହ ଭଲ ହୁଅନ୍ତା ଯଦି ତୁ ଅନେକ

ଅପ୍ରାସଙ୍ଗିକ କଥା ଅନାବଶ୍ୟକ ସ୍ଥଳରେ ଖୁଞ୍ଚି ହେଉ ନଥାନ୍ତି । ମୁଁ କେତେବେଳେ କହିଲି କି ମୁଁ ଯାହାସବୁ କରୁଛି ତାହା ସବୁବେଳେ ନୂଆ କାମ ! ନୂଆ ହେଉ କି ପୁରୁଣା, ସବୁବେଳେ ମୋ ଗତିବିଧି ଉପରେ ଏତେ ନଜର ଦେବା ତୋର କଣ ଦରକାର ପଡ଼ୁଛି ?

ଏତିକି କହି ଭାଇ ପାନ ପାକୁଳିଲା । ଭାଇ ପାନ ମଧ ଖାଏ ଯେ ! ମା ଜାଣନ୍ତି । ହେଲେ ସିଏ ପାନ ପାକୁଳିଲା ବେଳେ ଏତେ ବାଜେ ଦିଶେ ତାର ଗାଲ ପଶିଯାଇଥିବା ଠାକୁଆ ମୁହଁ ଓ ଉପରକୁ ଉଠି ଆସିଥିବା ହନୁହାଡ଼ ଯେ, ମତେ, ସେମିତି ଅବସ୍ଥାରେ ତା' ଉପରେ ରାଗିଗଲେ ବାନ୍ତିବାନ୍ତି ଲାଗେ ।

ଆଉ କିଛି କହିବାକୁ ମୋର ଇଚ୍ଛା ନଥିଲା । ମୁଁ ଜଣାଇ ଦେବାକୁ ଚାହୁଁଥିଲି ଯେ ମୁଁ ଗମ୍ଭୀର ମନଯୋଗ ସହକାରେ ପାଠ ପଢ଼ୁଛି । ଭାଇ ନୀରବ ଥିଲେ ଯଦି ମୋର କଣ୍ଠସ୍ୱର ଶୁଭେ ମା'ଙ୍କ ପାଇଁ ତାହା ଏକ ସୁଯୋଗ । ସେ ଝପଟି ଆସି ମତେ ଆକଟି ନଅନ୍ତି । ମୋର ଉପରେ ତାଙ୍କର ଯେତେ ରାଗ-ବିରକ୍ତି-ପ୍ରଭୁତ୍ୱ ! ଭାଇ ଯେତେ ନିଷ୍ଠୁର କି ଅବାନ୍ତର କଥା କହୁଥିଲେ ବି ସେ କିଛି କରନ୍ତି ନାହିଁ ବା ହସ୍ତକ୍ଷେପ କରନ୍ତି ନାହିଁ । ହେନେ ଏକଥା ନେଇ ଅଭିଯୋଗ କଲାରୁ ମା କହିଥିଲେ, ମୁଁ ବୁଝିଯାଏ ବୋଲି ସେ ସବୁ ମୋ ଉପରେ ଆସ୍ଫାଳନ ଦେଖାନ୍ତି । ଭାଇ ରାଗିଗଲେ ଭୂସ୍‌କନା କିଛି ଗୋଟେ କରିବସିବ ।

ଭାଇ ଦୁଆର ମୁହଁରେ ଠିଆହେଇ ମୋ ଆଡ଼କୁ ଏକ ଲୟରେ ଚାହିଁଥିଲା । ସେ ହୁଏତ ମୋଠାରୁ କିଛି ଉତ୍ତର ଆଶା କରୁଥିଲା ଓ ମୁଁ ବହିଉପରେ ଖୋଲା ଗ୍ଲାଭଭଳି ମୁହଁ ମାଡ଼ି, କଣେଇ କଣେଇ ତା' ଆଡ଼କୁ ଚାହୁଁଥିଲି । ମୁଁ କିଛି ନକହିବାରୁ ସେ କହିଲା : ନିଜକୁ ଭଲପିଲା ବୋଲି ଦେଖେଇ ହେବାକୁ ଘର ଲୋକଙ୍କ ପାଖରେ ସବୁବେଳେ ମତେ ତୁ ଅପ୍ରିୟ କରିବାକୁ ଚେଷ୍ଟା କରୁଛୁ । ଏସବୁ ଚୁପ୍‌ସଇତାମିକୁ ଗୋଏନ୍ଦା ଗିରି ମନେକର ଗର୍ବିତ ହେବାଭଳି ଶ୍ରେଷ୍ଠ ପିଲା ହେଇ ତୁ ଆଉ ନାହୁଁ ।

ମୋର କଣ ଗରଜ ପଡ଼ିଚ, ଝଗଡ଼ା ବନ୍ଦ ହେଉ ବୋଲି ମୁଁ ଚାହିଁବି ? ମୁଣ୍ଡ ଉଠାଇ ତା ଆଡ଼କୁ ଚାହିଁଲି। ଚାହାଣୀଟିଏ ଫୋପାଡ଼ିଲି ଓ କହିଲି : ଚୁପ୍‌ସଇତାନି ତୁ କରୁଥିବୁ, ମୁଁ ନୁହେଁ । ସବୁ କାମ ଖୋଲମ୍‌ଖୋଲା କରିବାକୁ ମୁଁ ଭଲପାଏ । ତୁ ଯେତେ ଆଖିବୁଜି ଦୁଧ ପିଇଲେ ବି ମୁଁ କଣ ତୋ କଥା ଜାଣିନ ପାରୁଛି ? ମୁଁ ଜାଣେ, ତୁ ଓମେନ୍‌ସ୍ କଲେଜ ହଷ୍ଟେଲରେ ରହୁଥିବା ଗୋଟେ କାଳି, ପତଳୀ, ଡେଙ୍ଗୀ ଓ ହରିଣ ଆଖିବାଲି ଶାଢ଼ୀ ପିନ୍ଧିଥିବା ଝିଅ ସାଙ୍ଗରେ ସିନେମା ଦେଖିବାକୁ ଯାଉ । ତୋ ଅଫିସ୍ ଲୋକଙ୍କ ସହିତ ଭୋଜି ବା ପିକ୍‌ନିକ୍‌ରେ ମଦ ପିଉ । କେବେ କଣ ଏକଥା କାହାକୁ କହିଚି ?

ଏତିକବେଳେ ମା'ଙ୍କର ଭିତର ଘରୁ ଏପଟ ବଖରାକୁ ଆସିବାର ଥିଲା ? ଆହା ! ମୁଁ କେମିତି ଭୁଲିଗଲି ଯେ, ମା ଏବେ ଘରେ ଅଛନ୍ତି !

ମୁଁ ମା'ଙ୍କ ଆଡ଼ୁଆଳରେ ରହିଗଲି । ନା, ବରଂ ମୁଁ ତାଙ୍କୁ ପିଠିପଟେ ରହି ଯାଇପାରିବା ଭଳି ମା ଆସି ଆମ ଦୁହିଁଙ୍କ ମଝିରେ ଠିଆ ହୋଇଗଲେ । ମା'ଙ୍କ ଚଉଡ଼ା ପିଠି ଉହାଡ଼ରୁ ମୁଁ ଦୁହିଁଙ୍କୁ ଦେଖିଛି, ଭାଇର ମୁହଁ କେମିତି କୁଞ୍ଚୁକୁଞ୍ଚ, ହାତ କେମିତି ମୁଠାମୁଠା ହୋଇଗଲା । ମୁଣ୍ଡବାଳକୁ ମୁଠାଇଧରି କେମିତି ସେ କର୍କଶ ଭାବେ ଟାଣୁଥିଲା । ଗୋଟେ ପ୍ରକାର ଗଁ ଗଁ ବା ଫଁ ଫଁ ଶବ୍ଦ ବି ଶୁଭିଲା ଅସ୍ପଷ୍ଟଭାବେ ଓ କେମିତି ଯୋରରେ ନିଃଶ୍ୱାସ ମାରି ଏନ୍.ସି.ସି. କାଇଦାରେ ସେ ପଛକୁ ବୁଲି ଚାଲିଗଲା । ମୁଁ ଝର୍କା ପଟେ ଦେଖିଲି ବେଳକୁ ତା' ସାଇକେଲ ସହିତ ସେ ଗେଟ୍ ଆରପଟକୁ ଚାଲିଗଲାଣି ।

ଅଚାନକ ମା' ମୋର ଗାଲରେ ଠାଏ କରି ଚାପୁଡ଼ାଏ ପିଟିଲେ ମୁଁ ନିର୍ବିକାର ପାଲଟି ଗଲି । ମା'ଙ୍କର ଏତେ ଭୀଷଣ ରୂପ ପୂର୍ବରୁ କେବେ ଦେଖିନଥିଲି ।



ଆମେ ଜାଣିଥିଲୁ ଭାଇ ଆଉ ରାତିରେ ଘରକୁ ଫେରିନପାରେ । ସେ ପ୍ରକୃତରେ ଫେରିଲା ନାହିଁ । ଆମେ ଅନୁମାନ କରୁଥିଲୁ, ଭାଇ !

ହୁଏତ କିଛିଦିନ ଯାଏଁ ଘରକୁ ନଆସି ପାରେ । ସେ ପ୍ରକୃତରେ ଆସିଲା ନାହିଁ । କିନ୍ତୁ ଆମେ ଆଶଙ୍କା କରିନଥିଲୁ ଭାଇ ଏତେଦିନ ଯାଏଁ କୁଆଡ଼େ ଗାଏବ ହୋଇଯିବ ।

କ୍ରମେ ଆମେ ଜାଣିଲୁ ଭାଇ ଆଉ ଏ ସହରରେ ନାହିଁ । ଅଫିସ୍‌ରେ ଧରାଧରି କରି ବଦଳି ମାଗି ଭବାନୀପାଟଣା ଚାଲିଯାଇଛି । ବାପା ଥରେ ତାକୁ ଖୋଜିବାକୁ ଯାଇଥିଲେ ସେ ଦେଖା ଦେଲାନି । ଲୁଚିଲା । ମୁଁ ବି ଥରେ ସମ୍ବଲପୁର ଯାଉଛି ବୋଲି ଘରେ କହି ଭବାନୀପାଟଣା ଚାଲିଯାଇଥିଲି । ଭାଇକୁ ରାସ୍ତାରେ ଭେଟି କାନ୍ଦି ପକାଇଲି । କହିଲି : ମୋର ଭୁଲ୍ ହୋଇଯାଇଛି; ମତେ କ୍ଷମା କରିଦେ : ମା ଏତେ କାନ୍ଦୁଛନ୍ତି ସେ ଦେଖି ହେଉନି, ଚାଲ୍ ଘରକୁ ଫେରିଯିବା ।

ସେ କହିଲା : ମା' କାହିଁକି କାନ୍ଦୁଛନ୍ତି ? ତୁ ତ ଅଛୁ, ତାଙ୍କର କୋଡ଼ପୋଛା ପୁଅ !



ବାପା ଭାବନ୍ତି, ଭାଇ ତାଙ୍କର କୌଣସି ନା କୌଣସି ଚିଠିର ଉତ୍ତର ଦେବ ! ମା' ଭାବନ୍ତି, ପାଗଳା ପରି ବୁଲିବ ବୁଲିବ; କ୍ଲାନ୍ତ ଲାଗିଲେ ଅବଶ୍ୟ ଫେରି ଆସିବ । ଆମେ ତିନିହେଁ ଘଣ୍ଟାର କଣ୍ଟା ଭଳି ନିଜ ନିଜ କାମରେ ବୁଡ଼ି ସମୟ ବିତାଉ । କେହି କାହାକୁ କିଛି କହୁନା । ସମୟ, ଦିନ, ମାସ, ବର୍ଷ ବିତି ଯାଉଥାଏ ।



# ଲକ୍ଷ୍ୟହୀନ

ନଚିକେତାକୁ ଅଠେଇଶ ଚାଲିଛି । ସେ କିଛି କରେ ନାହିଁ । ଖାଏ, ପିଏ, ଶୁଏ, ବୁଲେ, ସିନେମା ଦେଖେ ଓ କେବେ ସିଗାରେଟ ଟାଣୁଥିଲା; ଏବେ ବଡ଼ ଟାଣେ । ତା'ର ପ୍ରାୟ ଅନ୍ୟ କାମ କିଛି ନାହିଁ । ଥାଇପାରେ; କିନ୍ତୁ ସମସ୍ତେ ଜାଣନ୍ତି, ସେ ଅନ୍ୟ କିଛି କରିବାକୁ ଆଗ୍ରହୀ ନୁହେଁ । ବି.ଏ. ପାଶ୍ କରିବା ପରେ ସେ ବେକାର । ଯେକୌଣସି ଚାକିରି ପ୍ରତି ତା'ର ଆସକ୍ତି ନାହିଁ । ଚାକିରି ପାଇଁ ସେ ଖାସ୍ ଚିନ୍ତିତ ବି ନୁହେଁ ।

ନଚିକେତାର ଉଚ୍ଚତା ସାଧାରଣ ମଣିଷଙ୍କ ଉଚ୍ଚତାଠାରୁ ବେଶୀ । ତାହା ଏକ କାରଣ, ଯେଉଁଥିପାଇଁ ସେ ଅନ୍ୟମାନଙ୍କଠାରୁ ନିଜକୁ ଅସାଧାରଣ ମନେକରେ । କଲେଜରେ ପଢ଼ୁଥିବାଯାଏ ସିଏ ଫୁଟବଲ ଖେଳୁଥିଲା । ଖୁବ୍ ଭଲ ଖେଳୁଥିଲା । କିନ୍ତୁ ପରେ ଆଉ ଖେଳିଲା ନାହିଁ । ସ୍କୁଲ, କଲେଜରେ ଓ ବାହାରେ ସେ ଖେଳିଥିବା ଏକଚାଳିଶଟି ମ୍ୟାଚରେ ସର୍ବମୋଟ ସତଚାଳିଶଟି ଗୋଲ ସ୍କୋର କରିଥିଲା । କେତେକ ମ୍ୟାଚ୍‌ରେ ନିଜ ଦଳକୁ ନିଶ୍ଚିତ ପରାଜୟରୁ ବଞ୍ଚାଇ ବିଜୟୀ କରାଇଥିଲା । ତାହା ଏକ କାରଣ, ଯେଉଁଥିପାଇଁ ରାଉରକେଲା ଷ୍ଟିଲ ପ୍ଲାଣ୍ଟ ତାକୁ କିରାଣି ଚାକିରି ଯାଚିଥିଲା । 'କିରାଣି ଚାକିରି କିଏ କରିବ'—କହି ସୁଯୋଗଟିକୁ ଲେଉଟେଇ ଦେଲା । ପୋଲିସ୍ ଅଫିସର ହେବାକୁ ତା'ର ଇଚ୍ଛା । କିନ୍ତୁ ସବ୍-ଇନ୍‌ସପେକ୍ଟର ନୁହେଁ; ଆଇ.ପି.ଏସ୍ ଅଫିସର ହେବାକୁ ସେ

ଗୁହେଁ । ବି.ଏ. ପରେ ଦୁଇ, ତିନିବର୍ଷ ଫୁର୍ତ୍ତିରେ ବୁଲାବୁଲି କରି, ଲଗ୍ ଲଗ୍ ଦୁଇଥର ସିଏ ପ୍ରଶାସନିକ ସେବାର ପ୍ରତିଯୋଗିତାମୂଳକ ପରୀକ୍ଷା ଦେବାକୁ ଫର୍ମ ପୂରଣ କରିଥିଲା । ପରୀକ୍ଷାରେ ଥରେ ବି ବସିଲା ନାହିଁ ।

ନଚିକେତା ଆଇ.ପି.ଏସ୍ ଅଫିସର ହେବାର ଯୋଗ୍ୟ ସ୍ୱାସ୍ଥ୍ୟର ଅଧିକାରୀ । ସୁଗଠିତ ଶରୀର । ଚଉଡ଼ା ଛାତି । ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବି ଥିବା ବଳିଷ୍ଠ ହାତ । ଶକ୍ତ ମାଂସପେଶୀ । ମୁହଁରେ ଦୃଢ଼ତା । ସେ ପ୍ରାୟତଃ ପିନ୍ଧେ ଜିନ୍ ପ୍ୟାଣ୍ଟ ଓ ଶସ୍ତା, ସାଧା ସାର୍ଟ । ସାର୍ଟର ଅନ୍ତତଃ ଦୁଇଟା, ଏପରିକି ତିନିଟା ବୋତାମ ଖୋଲା ରଖିଥାଏ । ଫୁଲସାର୍ଟର ହାତକୁ ମୋଡ଼ି କହୁଣିଯାଏ ଉଠାଇ ଦେଇଥାଏ । ଯୁଆଡ଼େ ବି ଯାଏ, ପାଦ ଦୁଇଟି ହିଁ ତା'ର ଯାନ । ଚାଲୁଥାଏ ବେଶ୍ ବେପରୁଆ ଠାଣିରେ । ତା' ଚାଲିରେ ଫୁଟି ଉଠୁଥାଏ ଅତ୍ୟଧିକ ଦମ୍ଭ ଓ ଦର୍ଶମାୟୁ ଛନ୍ଦ । ଏକା ଏକା ବୁଲେ ମନଇଚ୍ଛା । ଭୋକ ଲାଗିଲେ ଘରକୁ ଫେରିଆସେ ।

ବାପା ମରିଯିବା ପରେ ନଚିକେତାର ମନ କେଉଁଥିରେ ବି ଲାଗୁନାହିଁ । ବାପା ଥିଲେ ଖାଦ୍ୟ ଓ ଯୋଗାଣ ବିଭାଗର ଜଣେ ତଳିଆ ଅଫିସର । ତାଙ୍କର ପୁରୁଣା ପେଟବେମାର ଥିଲା । ଅଧିକାଂଶ ଦିନ, ଯାହା ଖାଇଲେ ବି ତାଙ୍କର ବାନ୍ତି ହୋଇଯାଉଥିଲା । କେବେ କେବେ ସେ ରକ୍ତ ବାନ୍ତି କରୁଥିଲେ । ଅପରେସନକୁ ଡରୁଥିଲେ । ସମସ୍ତେ ବିଶ୍ୱାସ କରୁଥିଲେ ତାଙ୍କୁ କିଏ ଗୁଣି ଗାରେଡ଼ି ବଳରେ ହଇରାଣ ହରକତ କରୁଛି । ଏଣେ ତେଲ ଲୁଣା ଖାଦ୍ୟ ଖାଇବାରେ ତାଙ୍କର ଥିଲା ପ୍ରବଳ ଆଗ୍ରହ । ପୁଣି ବୋଉକୁ ଲୁଚାଇ ସେ ଡାଲରେ କଞ୍ଚାଲଙ୍କା ମନ୍ଥି ଖାଉଥିଲେ । ଶେଷରେ ଅପରେସନ ହେଲା । ତା'ପରେ ସେ ଆଉ ମାତ୍ର ଦଶଦିନ ବଞ୍ଚିଲେ । ସାମାନ୍ୟ ଚେଷ୍ଟା କରିଥିଲେ, ବାପାଙ୍କ ବଦଳରେ ନଚିକେତା ଓଡ଼ିଶା ସରକାରଙ୍କ ଅଧୀନରେ ଖଣ୍ଡେ ଚାକିରି ଅବଶ୍ୟ ପାଇଥାନ୍ତା । ସେତେବେଳକୁ ସେ ବି.ଏ. ଶେଷ ବର୍ଷର ଛାତ୍ର । ପରୀକ୍ଷା ଆଉ ତିନିମାସ ପରେ । ବାପାଙ୍କ ଶୁଦ୍ଧିକ୍ରିୟା ଶେଷ କରି ସେ

ପଢ଼ାପଢ଼ିରେ ବ୍ୟସ୍ତ ରହିଲା । ପରୀକ୍ଷା ପରେ ଘରକୁ ଫେରିବା ପାଇଁ କୌଣସି ତତ୍ପରତା ଦେଖାଇଲା ନାହିଁ ।

ମା' କହିଲେ, ତତେ ଯେମିତି ହେଉ କିଛିଗୋଟେ ଚାକିରି କରିବାକୁ ପଡ଼ିବ । ଘ୍ରେଷ୍ଟ-ବଡ଼ ବାରିଲେ ଚଳିବନି । ତା' ନହେଲେ ଆମେ ଏ ସହର ଜାଗା ଛାଡ଼ି ଗାଁକୁ ଚାଲିଯିବାକୁ ବାଧ୍ୟହେବା । ଗାଁକୁ ଯିବାରେ ମୋର କିଛି ଆପତ୍ତି ନାହିଁ । ଘର ଅଛି, ଜମିବାଡ଼ି ଅଛି । ଚଳିବାକୁ ଅସୁବିଧା ହେବନି । କିନ୍ତୁ ତମେ ଶିକ୍ଷିତ କଣ ଗାଁରେ ଯାଇ ଚଳିପାରିବ ? କଣ ହେବ ତମର ଭବିଷ୍ୟତ ?

ନଚିକେତାର ସାନ ଭଉଣୀ ବିନି ଓ ତା'ତଳେ ଭାଇଟିଏ ମଣ୍ଟୁ । ନଚିକେତା ଗାଁକୁ ଯିବାକୁ ଚାହେଁନା । ଗାଁରେ ଜମି ଚାଷ କରୁଥିବା ଭାଗଚାଷୀମାନେ ବହୁତ ହେରଫେର କରନ୍ତି, ଠକନ୍ତି । ଜମିପିଛା ବର୍ଷ ସାରା ଖର୍ଚ୍ଚକୁ ବାଦ ଦେଇ ଯାହା ମନଖୁସିରେ ଦିଅନ୍ତି ସେଥିକରେ ଅବଶ୍ୟ ଭିତରେ ଭିତରେ ଘରର ସାତ, ଆଠ ମାସର ଖର୍ଚ୍ଚ ଚଳିଯାଏ । ଅବଶିଷ୍ଟ ଖର୍ଚ୍ଚ ତୁଲାଇବାକୁ ପଡ଼େ ବାପାଙ୍କର ମୃତ୍ୟୁ ଅନ୍ତେ ମିଳିଥିବା ଟଙ୍କା, ଅନ୍ୟାନ୍ୟ ସଞ୍ଚୟ ବା ସେଥିରୁ ମିଳୁଥିବା ସୁଧରେ ।

ନଚିକେତା ନିଜପାଇଁ ଅଧିକ ଖର୍ଚ୍ଚ କରେନା । ତା'ର ସେମିତି କିଛି ବଦ୍‌ଖର୍ଚ୍ଚ ବି ନାହିଁ । ଭାଇ ଭଉଣୀ ଦୁହେଁ ପଢ଼ୁଛନ୍ତି । ତାଙ୍କ ପାଇଁ ଖର୍ଚ୍ଚ ଟିକିଏ ବେଶୀ ହୁଏ । 'ବସି ଖାଇଲେ ନଈବାଲି ସରେ' ବୋଲି ମା' ବାରମ୍ବାର କହନ୍ତି ଓ ସନ୍ତାପି ହୁଅନ୍ତି ।

ହଠାତ୍ କିଛି ଗୋଟେ ଚହଳ ସୃଷ୍ଟି କରିଦେବାକୁ ନଚିକେତାର ଭାରି ଇଚ୍ଛାହୁଏ । ଏମିତି ଯେ ଭାବନା ପରେ ଭାବନା ସବୁ ମସ୍ତିଷ୍କ ଭିତରେ ରକେଟ ପରି ଖାଲି ଇତସ୍ତତଃ ଘୂରି ବୁଲନ୍ତି । ସେମିତି ଅବସ୍ଥାରେ ସବୁବେଳେ ତା' ଭାବନାର ସ୍ରୋତ ଆଗରେ ପ୍ରତିବନ୍ଧକ ହୋଇ ଠିଆ ହୁଏ ଗୋଟିଏ ପବନ ଭର୍ତ୍ତି ଥିବା ପେଣ୍ଡୁ । ଭାବନା ବ୍ୟାହତ ହୁଏ ଓ ସତେ ଅବା ତାର ଚୈତନ୍ୟ ଉଦୟ ହୁଏ । କାଳ୍ପନିକ ପେଣ୍ଡୁଟି ତାକୁ ଯେମିତିକି ବାଟ କଢ଼ାଇ ନିଏ । ପେଣ୍ଡୁଟିର ପଛେ ପଛେ ସେ

ଗୁଲିଯାଏ ଘରଠାରୁ ଅଳ୍ପଦୂରରେ ଥିବା ଫୁଟବଲ ପଡ଼ିଆକୁ । ପଡ଼ିଆ କଡ଼ରେ ଥିବା ଗୋଟିଏ ସିମେଣ୍ଟ ବେଞ୍ଚରେ ବସେ । କେବେ ଅବା ବସେ ପଡ଼ିଆ ଭିତରେ । ପେଣ୍ଡୁଟି ସବୁବେଳେ ବଶୀଭୂତ କୁକୁରଟିଏ ଭଳି ତା'ର ପାଖାପାଖି ହିଁ ଥାଏ । ପଡ଼ିଆର ଦୁଇପଟେ ଦୁଇଟି ଗୋଲପୋଷ୍ଟ । ପେଣ୍ଡୁଟି ଥାଏ ନିଶ୍ଚଳ ଓ ସେ ମଧ୍ୟ ବସିଥାଏ ଚୁପ୍‌ଚାପ୍ । ଉଭୟ ପାର୍ଶ୍ୱରେ ଲୋଭମୟ ଗୋଲ୍‌ପୋଷ୍ଟ—ଲକ୍ଷ୍ୟସ୍ଥଳ । ସମୀପରେ ପେଣ୍ଡୁ । ପଡ଼ିଆରେ ଏକାକୀ ନଚିକେତା । କଣ କରିବ; କଣ କରାଯିବା ଉଚିତ, କଣ କରାଯାଇ ପାରିବ ସେ ବିଲ୍‌କୁଲ ଠିକ୍ କରିପାରେ ନାହିଁ । ଏମିତି ଯେ, ଭୋକିଲା ଶୁଆଟିଏ ପଞ୍ଜୁରି ଭିତରେ ଥାଇ ଧାନ ପୁଞ୍ଜିଏ ପାଇଲେ ତରତରରେ ଧାନ ଗୁଣ୍ଡିକରୁ ଗୁଡ଼ଳ ବାହାର କଲାଭଳି ଉଦ୍‌ବିଗ୍ନତାରେ ନଚିକେତା ନିଜର ନଖ ସବୁ କାମୁଡ଼େ, ଛିଣ୍ଡାଏ । ହାତ ଆଙ୍ଗୁଠିରୁ । ଗୋଡ଼ ଆଙ୍ଗୁଠିରୁ ବି । ବେଳେ ବେଳେ ନଖ ବେଶୀ ଛିଣ୍ଡିଯାଇ ଆଙ୍ଗୁଠିର ପବ ପୋଡ଼େ । ରକ୍ତ ବାହାରି ଆସେ ।

ବାପାଙ୍କ ମୃତ୍ୟୁପରେ ଘରର ଦାୟିତ୍ୱ ଆପାତତଃ ନଚିକେତା ଉପରେ । ଅଥଚ ସେ କିଛି ହିଁ କରେ ନାହିଁ । ଯାହା କରିବା ଦ୍ୱାରା ମୋଟେ ଚହଲ ସୃଷ୍ଟି ହୋଇପାରିବ ନାହିଁ, ତାହା ସେ କରିବାକୁ ଚାହେଁନା । କେତେ ଶୃଙ୍ଖଳିଶୂନ୍ୟ, ପିମ୍ପୁଡ଼ିମାନଙ୍କର ନିଃଶବ୍ଦ ଯାତାୟତ, ସ୍ଥିର ଓ ପ୍ରବାହବିହୀନ ପୋଖରୀର ଜଳ । କେତେ ଅସାର ଅଜଗରର ସୀମିତ ଅରଣ୍ୟ, ଏଣ୍ଡୁଅରଂ ଶିଙ୍ଘୁବୁଦା ଓ କୋଟି କୋଟି କରାଣି, ଶିକ୍ଷକ, ଅସରପା ଧ୍ୱାସ୍ତେ ଅଫିସରଙ୍କର ଦୟମୟ, ଅଭାବଗ୍ରସ୍ତ ଜୀବନ ! ନଚିକେତା କୌଣସି ସିଦ୍ଧାନ୍ତ ନେଇପାରେ ନାହିଁ । ଅତିଷ୍ଠ ହୋଇଉଠେ ଓ ପାଖରେ ଥିବା କାଳ୍ପନିକ ପେଣ୍ଡୁଟିକୁ ନିଜର ସମସ୍ତ ଆକାଂକ୍ଷାର ବିକଳ୍ପ ବିଗ୍ରହ ମନେକରି ଏକ ଶକ୍ତ ଲାତ ମାରେ । ପେଣ୍ଡୁଟି ତା ପାଖରୁ ଦୂରକୁ ଗୁଲିଯିବା ମାତ୍ରେ ତା' ସାମନାରେ ଆସି ଉଭା ହୁଏ ଝିନା । ଝିନାକୁ ପାଖରେ ପାଇଲେ ନଚିକେତା ଭୁଲିଯାଏ ବଲ୍‌କୁ, ଗୋଲ୍-ପୋଷ୍ଟକୁ, ପଡ଼ିଆକୁ, ଭୁଲିଯାଏ ନିଜର ଚହଲ ସୃଷ୍ଟି କରିବା ଲାଳସାକୁ, ଲକ୍ଷ୍ୟସ୍ଥଳକୁ ଓ ଏପରିକି ସଂସାରକୁ । ଶୂନ୍ୟରେ ପକ୍ଷ ମେଲାଇ ଉଡ଼ିବା

ପରି ତାକୁ ଲାଗେ । ପାଖେପାଖେ ସମାନ୍ତରାଳ ଉଡ଼ୁଥିବା ବଗୁଲା ଆଲୁଅ ଭଳି ଦୀପ୍ତିମନ୍ତ ଝିନାର ଚେରିଆ ପରି ନିତମ୍ବ, ଡମ୍ବରୁ ପରି କଟି ଅଥବା ପଦ୍ମ କୋରକ ପ୍ରାୟ ସ୍ତନକୁ ହାତ ବଢ଼ାଇ ଛୁଇଁ ଦେବାକୁ ଖଜବଜ ଲାଗେ । ଝିନା କିନ୍ତୁ ତାକୁ ଟାଣିଆଣେ ମାଟି ଉପରକୁ । ମୁହଁରେ ଅସ୍ତମାନ ସୂର୍ଯ୍ୟର ରକ୍ତିମ ନିଷ୍ପ୍ରଭତା ବୋଳି ଝିନା କହେ, ବହୁତ ହେଲା ଏ ଭଲପାଇବା, ଏ ପ୍ରେମ ଆଦର, ଏ ଦେଖାଶିଖା ରୋମାନ୍ସ । ଆଉ ନୁହେଁ । ଏଣିକି ବିବାହ ପାଇଁ ଯୋଜନା କର । ପ୍ରଥମେ ଜୀବିକା ସନ୍ଧାନ । ତା'ପରେ ବିବାହ ।

ପେଣ୍ଡୁଟି ଫେରିଆସେ ପାଖକୁ । ନଚିକେତା ପୁଣି ଏକ ଲାତ ମାରେ । ପେଣ୍ଡୁ ଅତି ଶୀଘ୍ର ଗତିରେ ଗଡ଼ଗଡ଼ ଚାଲିଯାଏ ଓ ଗୋଲପୋଷ୍ଟ ଉପରେ ବାଜି ତେର୍ଚ୍ଛା ଉଠିଯାଏ ଅନେକ ଶୂନ୍ୟକୁ । ମା' ଆସି ତା' ପାଖରେ ବସିବା ପରି ତାକୁ ଲାଗେ । ମା' ପ୍ରଥମେ ତା'ର ମୁଣ୍ଡ ଓ ପିଠିକୁ ଆଉଁସି ଦିଅନ୍ତି । ଲୁଗା କାନିରେ ପୋଛି ଦିଅନ୍ତି ତାର ଝାଳୁଆ ମୁହଁ ଓ କୋଳେଇ ଧରି ତା' ମୁଣ୍ଡ ଉପରେ ନଜର ଚିବୁକ ରଖି ସେ କହନ୍ତି, ମଣ୍ଟୁ ଏବର୍ଷ କଲେଜରେ ପଢ଼ିବ । ଭଲ ପାତ୍ରଟିଏ ଯୋଗାଡ଼ କରି ବିନିର ବାହାଘର କରାଇବାକୁ ପଡ଼ିବ । ତତେ ଆସି ସତେଇଶ ପୂରି ଅଠେଇଶ ଚାଲିଲା । ତଥାପି ତୋ ହାତରେ କିଛି ହେଲା ନାହିଁ । ତୁ ତ କିଛି ବୁଝିବୁନି । କେମିତି ହବ ସବୁ ? ଆଉ ଯାହା ଖର୍ଚ୍ଚ ହୋଇଥାନ୍ତା ପଛେ ଏମ୍.ଏଟା ହେଲେ ପଢ଼ିଥାନ୍ତୁ ! ଶୁଣିଲୁ ନାହିଁ । ସାଧା ଗ୍ରାଜୁଏଟଟିଏ କେତେବଡ଼ ଚାକିରି ଖଣ୍ଡେ ବା ପାଇବୁ ? ପୁଣି ଏ ଯୁଗରେ ! ତଥାପି ଦୁଇଦୁଇଟା ଚାକିରିର ସୁଯୋଗକୁ ଗୋଡ଼ରେ ଆଡ଼େଇ ଦେଲୁ । କଣ ତୋର ମନରେ ଅଛି କେଜାଣି ! କାହାର କିଛି ରୋଜଗାର ନଥାଇ, ଏ ସହର ବଜାର ଜାଗାରେ ଆମେ ଚାରିଜଣ କେବଳ ସଞ୍ଚୟକୁ ସମ୍ବଳ କରି ଚଳିଲେ କେତେଦିନ ଭଲା ତିଷ୍ଠି ପାରିବା ? ତୁ ନ ହେଲେ ଗାଁ ଜମିରୁ ଏକରେ, ଦୁଇ ଏକର ବିକ୍ରୀ କରି, ଆଉ କିଛି ସରକାରୀ ଋଣ ଆଣି ଏଇଠି କିଛି ବ୍ୟବସାୟ କରିପାରନ୍ତୁ । କିଛି ହେଲେ ତ କର ।

ସେ କିଛି ଗୋଟେ କରିବାକୁ ଚାହେଁ ଯେ, ଅନ୍ତତଃ ଚହଳ ସୃଷ୍ଟି ହେବା ଭଲ । କିନ୍ତୁ ବ୍ୟବସାୟ ? ଧୂତ୍ !



ଝିନାର ବାପା ଆସିଲେ ନଚିକେତା ଘରକୁ । ସକାଳ ନଅଟା । ନଚିକେତା ଗାଧୋଇ ସାରି ମୁଣ୍ଡ କୁଣ୍ଡାଉ ଥାଏ । ନଚିକେତାର ମା'ଙ୍କ ହାତକୁ ଝିନାର ବାପା ବଢ଼ାଇ ଦେଲେ ଗୋଟିଏ ନିମନ୍ତ୍ରଣପତ୍ର । କହିଲେ ଝିନାର ବାହାଘର ଆଜି । ସନ୍ଧ୍ୟା ସାତଟାରେ ।

ନଚିକେତାର ମା' ଆଶ୍ଚର୍ଯ୍ୟ ହୋଇ ଉଚ୍ଚାରଣ କଲେ : କିନ୍ତୁ···!

ଝିନାର ବାପା ସରଳ ଭାବେ କହିଲେ, ଝିନାକୁ ପଚିଶ ଚାଲିଲା । ବୁଢ଼ା ବାପା ହିସାବରେ ମୋର କର୍ତ୍ତବ୍ୟ କଣ ? ଆଉ ବେଶୀ ଡେରି କରିବା କଣ ଠିକ୍ ହେବ ?

ନଚିକେତାର ମା' ଜେରା କରିବା ପରି, ସ୍ୱରରେ ଈଷତ୍ ଅଭିମାନ ମିଶାଇ ପ୍ରଶ୍ନକଲେ, ବାହାଘର ଆଜି ସନ୍ଧ୍ୟାରେ, ଆମକୁ ତମେ ଏତେ ଡେରିରେ ଖବର ଦେଲ ଭାଇ ? ମୁଁ ପୂର୍ବରୁ ଖବର ପାଇଥିଲେ, ଝିଅଟାକୁ ତୋଡ଼ାଣିପିଆ କରିବାକୁ ଘରକୁ ଡାକଥାନ୍ତି ! ସିଏ ମୋ ଘରକୁ ବୋହୂ ହୋଇ ନଆସିଲେ ମଧ ତ ମୋର ଝିଅପରି । ମୁଁ ଦିନେ ଦୁଇଦିନ ଆଗରୁ ଯାଇ ତମ ଘରେ ଉପସ୍ଥିତ ହୋଇଥାନ୍ତି । ଏପରି ଶୁଭଖବର ତମେ ଆମକୁ ଏତେ ଡେରିଯାଏ ନ ଜଣାଇ ଗୋପନ ରଖିଲ । ଆମ ସମ୍ପର୍କ କଣ କେବଳ ଭୋଜି ଖାଇବାକୁ ଯିବାପର୍ଯ୍ୟନ୍ତ ସୀମିତ ?

ଝିନାର ବାପା ଚିରଦୁଃଖୀ ପରି ମୁଖଭଙ୍ଗୀ କରି ଅତି ନମ୍ରତାର ସହିତ ଉତ୍ତର ଦେଲେ, ଏଥିରେ ଲୁଚାଇବା କିମ୍ବା ଗୋପନ ରଖିବା ଭଳି କିଛି ନାହିଁ ଭାଉଜ । ସବୁ କଥାକୁ ତ ମୁଁ ଜଣେ ଲୋକ । ମୋ ହାତ ପାଖକୁ ଆଉ କିଏ ଅଛି ? ହଠାତ୍ ହଠାତ୍ ବାହାଘର ଠିକ୍ ହେଲା ।

ବରପକ୍ଷ ରହୁଛନ୍ତି ବାଲ୍ମୀକିରେ । ସେମାନେ ପୁଣି କାଲି ସନ୍ଧ୍ୟାଠାରୁ ଆସି ଏଠାକାର ଗୋଟିଏ ହୋଟେଲରେ ରହୁସାରିଲେଣି । ତାଙ୍କର ସୁବଧା, ଅସୁବଧା କଥା ବୁଝିବାକୁ ମଧ ମୋ। ଦଉଡ଼ କରିବାକୁ ପଡ଼ୁଛି । ଯାବତୀୟ ଝଞ୍ଜାଳରେ ବ୍ୟସ୍ତରହ୍ନ ଗତକାଲିଠାରୁ ଆଜି ଭିତରେ ମତେ ସବୁ କାର୍ଡ଼ ବାଣ୍ଟିବାକୁ ପଡ଼ୁଛି ।

ନଚିକେତାର ମା' କହିଲେ, ହଉ, ତମେ ଯାଅ । ଆମେ ଆସିବୁ ।

ନଚିକେତା ପୋଷାକ ପିନ୍ଧ ବୁଆଡ଼େ ଯାଇଥାନ୍ତା । ଆଉ ଗଲା ନାହିଁ । ବମର୍ଷ, ବପର୍ଣ ଦେଖାଗଲା । ଚଉକିରେ ବସି ରହିଲା ।

ଝିନାର ବାପା ଥିଲେ ଜଣେ କଣ୍ଟ୍ରୋଲ ଡିଲର । ଖାଦ୍ୟ ଓ ଯୋଗାଣ ବଭାଗର ଜଣେ କର୍ମଚାରୀ ଥିଲେ ନଚିକେତାର ବାପା । ତାଙ୍କଠାରୁ ବେଶ୍ ସାହାଯ୍ୟ, ସାହସ ପାଇ ଚୁରି, ପାଞ୍ଚବର୍ଷ ମଧ୍ୟରେ ଜଣେ କଣ୍ଟ୍ରୋଲ ଡିଲର ଗୋଟିଏ ମଧ୍ୟମ ଧରଣର ବସନ ଦୋକାନର ମାଲିକ ହେଇଯାଇ ପାରିଲା । ଦୁଇଜଣଙ୍କ ମଧ୍ୟରେ ଉତ୍ତମ ବନ୍ଧୁତା ସୃଷ୍ଟି ହୋଇ ତାହା ନବଡ଼ ପାରିବାରିକ ସମ୍ପର୍କ ପର୍ଯ୍ୟନ୍ତ ପ୍ରସାରିତ ହେଲା । ସମ୍ପର୍କକୁ ଚିରନ୍ତନ କରିବା ପାଇଁ ଝିନା ଓ ନଚିକେତାର ବାହାଘର ଭବଷ୍ୟତରେ ଅନୁଷ୍ଠିତ ହୋଇଥା'ନ୍ତା । ସେହିଭଳି ଏକ ମୌଖିକ ଚୁକ୍ତି ହେଇଥିଲା ଦୁଇ ମୁରବୀଙ୍କ ମଧ୍ୟରେ । ସେକଥା ଅନ୍ୟମାନେ ବ ଜାଣିଥିଲେ । ବାପା ଅକାଳରେ ମରିଗଲେ । ସାତବର୍ଷରୁ ଅଧିକ କାଳ ବତିଗଲାଣି ।

ମା' ଆସି ନଚିକେତା ପାଖରେ ବସିଲେ । କହିଲେ, ମନମାରି ବସିଲେ ଆଉ କଣହବ ? ତୁ ତ ଏଯାଏ ଯୋଗ୍ୟ ହେଲୁନାହିଁ । ସେମାନେ କଣ ଝିଅକୁ ବୁଢ଼ୀ ହେବାଯାଏ ଘରେ ବସାଇ ରଖିଥା'ନ୍ତେ ?

ନଚିକେତା କହିଲା, ଝିନା କଦାପି ଅନ୍ୟ କାହାକୁ ବାହା ହେବାକୁ ରାଜି ହୋଇନଥିବ । ସେମାନେ ଜବରଦସ୍ତି ତା'ର ବାହାଘର କରାଇ ଦେଉଥିବେ ।

ମା' କହିଲେ, ହୋଇପାରେ । ଝିନାକୁ ସେମାନେ ବୁଝାଇ ଦେଇ ଥାଇ ପାରନ୍ତି ମଧ୍ୟ । ଝିଅଟାର ବା ବୁଦ୍ଧି କଣ ?

ନଚିକେତା ତା'ର ମୁଖଭଙ୍ଗୀ କଠୋର କରି, ନଜର ବାଁ ପଟକୁ, ଘରର ଚଟାଣ ଉପରେ ଦୃଷ୍ଟି ସ୍ଥିର ରଖି କହିଲା, ମୁଁ ଏଇକ୍ଷଣି ଯାଇ ଝିନାକୁ ଏଠାକୁ ନେଇ ଆସିବି ।

ମା' ଗମ୍ଭୀର ସ୍ୱରରେ କହିଲେ, ନା, ତୁ ସେପରି କରିବୁ ନାହିଁ ।



ଆଖି ଆଗରେ ଆସି ଉଭାହେଲା ପେଣ୍ଡୁଟି । ଆଖିଠାରି, ହାତ ହଲାଇ ସତେ ବା ଡାକୁଛି ପ୍ରିୟ ସଖୀଟିଏ । ପେଣ୍ଡୁଟି ବାଟ କଢ଼ାଇ ନେଲା । ପେଣ୍ଡୁ ପଛେପଛେ ଗୁଲୁଗୁଲୁ ନଚିକେତାର ଅନୁଭବ ହେଲା, କେହି ଯେମିତି ସ୍ୱର୍ଗରୁ ପୁଷ୍ପ ବୃଷ୍ଟି କରୁଛି । ରାଶିରାଶି ଫୁଲଙ୍କ ଗହଣରେ ଦୋହଲି ଦୋହଲି ଖସିଆସୁଛି ବଡଟ ଏକ ହାର । ସେ ହାରରେ ଗୁନ୍ଥା ଯାଇଛି ଏକ ଦୁର୍ମୂଲ୍ୟ ପଦକ । ସେଇ ପଦକଟି ହିଁ ନଚିକେତା ଆଇ. ପି. ଏସ୍ ପାଇଥିବାର ସଶ୍ରଦ୍ଧ ସ୍ୱୀକୃତି । ହାରଟି ଆସି ଲମ୍ବି ଯାଇଛି ତା'ର ଗଳାରେ । ସହରରେ ସୃଷ୍ଟି ହୋଇଛି ଚହଳ, ଖେଳି ଯାଉଛି ଶୃଙ୍ଖଳା, ଖବରଟି ବ୍ୟାପି ଯାଉଛି ନିଆଁ ଭଳି । ଲୋକମାନେ କଥାବାର୍ତ୍ତା କରୁଛନ୍ତି, ପରାଶର ବାବୁଙ୍କର ବଡ଼ ପୁଅଟା ଆଇ. ପି. ଏସ୍ ପାଇଗଲା ହେ ! ନଚିକେତା ମାନେ ହିଁ ତ ଅଗ୍ନି । ତେଜିଲେ ତେଜ ଉଠିବ । ବ୍ୟାପିଯିବ । ପିଲାଟି,.ବାସ୍ତବିକ ପ୍ରଖର । ବାପାଙ୍କର ଅକାଳ ବିୟୋଗ ପରେ ମଧ୍ୟ ତା'ର ଧୈର୍ଯ୍ୟ ଦେଖ, ସ୍ଥିରତା ଓ ଜ୍ଞାନଗାରିମା ଦେଖ ! ସାଧା ଗ୍ରାଜୁଏଟଟିଏ ହୋଇ ସୁଦ୍ଧା·····ମାନିବାକୁ ପଡ଼ିବ ।

କେତେ ବଡ଼ଲୋକ, ପଇସାବାଲା ହଲମଡାକ କୋଳାହଳ କରୁଛନ୍ତି, ନଚିକେତା ଯାହା ଚାହିଁବ ମୁଁ/ମୁଁ/ମୁଁ/ମୁଁ/ମୁଁ/ମୁଁ/ ମୁଁ ତାହା ଦେବାକୁ ପ୍ରସ୍ତୁତ; କିନ୍ତୁ ଯେମିତି ହେଉ ମୋ ଝିଅକୁ /ମୋ ଝିଅକୁ/ମୋ ଝିଅକୁ/

ମୋ ଝିଅକୁ/ମୋ ଝିଅକୁ/ମୋ ଝିଅକୁ /ମୋ ଝିଅକୁ ତା' ସହିତ ବାହା କରାଇବ ।

ସେଇ କୋଳାହଳ ଭେଦକରି କେଉଁଠୁ ଭାସି ଆସୁଛି ଝିନାର ଉଦାସ ସ୍ୱର : ମୁଁ ବାପାଙ୍କୁ କହୁଥିଲି ତମ କଥା । ସେ ଭାରି ଦୁଃଖକଲେ । ତମ ବାପାଙ୍କ କଥା ମନେ ପକାଇ କହିଲେ, ତାଙ୍କ ପୁଅ ହେଇ ତମେ ଜୀବନରେ କିଛି କରିପାରିଲ ନାହିଁ । ଏ ଯାଏ କିଛି ହେଇ ପାରିଲ ନାହିଁ । ବାପାଙ୍କର ଜଣେ ବନ୍ଧୁ ଗୋଟିଏ ଇଣ୍ଡଷ୍ଟ୍ରୀର ମାଲିକ । ତମେ ରାଜିହେଲେ ତୁମକୁ ସେ ସେଇଠି କ୍ଲର୍କ-କମ୍-ଷ୍ଟୋରକିପର୍ ପୋଷ୍ଟରେ ରଖାଇ ଦେବେ । ତମେ ପ୍ରାଇଭେଟ ଟ୍ୟୁସନ ଖଣ୍ଡେ କଲେ ସୁଦ୍ଧା ତମ ସହ ମୋର ବାହାଘର କରାଇବାକୁ ବାପା ପ୍ରସ୍ତୁତ ଅଛନ୍ତି । କିଛି ତ କର !

ପଡ଼ିଆ ପାଖେଇ ଯାଇଥିଲା । ଆଗରେ ଆଗରେ ଗଡ଼ି ଯାଉଥିବା କାଲ୍ପନିକ ପେଣ୍ଡୁଟିକୁ ନଚିକେତା, ଦୌଡ଼ିଯାଇ, ଗୋଡ଼ରେ ଏକ ଓଜନିଆ ପାହାର ଦେଇ ଉଚ୍ଚାରଣ କଲା, ସିଂହ କଣ କେବେ ଘାସ ଖାଏ ?

ପେଣ୍ଡୁଟି ଯାଇ ପଡ଼ିଆର ମଝାମଝି ସ୍ଥିର ହେଇ ରହିଗଲା । ପଡ଼ିଆ ଆଡ଼କୁ ଲକ୍ଷ୍ୟକରି ନଚିକେତାର ଆଖିର ରଙ୍ଗ ବଦଳିବା ଆରମ୍ଭ ହେଲା । ଚକ୍ଷୁମଣି ଦେଖାଯାଇ କ୍ରମେ ଜଳନ୍ତା କୋଇଲା ଭଳି ଦାଉଦାଉ ହେଲା । ସେ ଛୁପୁଣିଥରେ ଆଖି ମଞ୍ଜି ଦେଖିଲା । ପଡ଼ିଆର ଦୁଇପାର୍ଶ୍ୱରୁ ଗୋଲପୋଷ୍ଟ ଯୋଡ଼ିକ କିଏ ଉପାଡ଼ି ନେଇଛି । ଲକ୍ଷ୍ୟସ୍ଥଳ ନାହିଁ । ସମ୍ମୁଖରେ । ଉଭାନ୍ । ଏବେ ଗୋଲ ମାରିବ କେଉଁଠି ?

ନଚିକେତାର ହାତମୁଠା କଠୋର ହେଲା । ମୁଖଭଙ୍ଗୀ ବଦଳିଲା । ଦୁମ୍‌ଦୁମ୍ ଗୁଳିରେ ସେ ଗଲା ପଡ଼ିଆ ମଝିରେ ସ୍ଥିର ଥିବା ପେଣ୍ଡୁ ପାଖକୁ । ପେଣ୍ଡୁଟିକୁ ପାଦରେ ଉଠାଇଲା । ଶୂନ୍ୟକୁ ଉଠିଗଲା ପେଣ୍ଡୁ । ନଚିକେତା ମୁଣ୍ଡରେ ଆଘାତ ଦେଲା । ତେର୍ଚ୍ଛା ଉଠିଲା ପେଣ୍ଡୁଟି

ପୁନଶ୍ଚ ଶୂନ୍ୟକୁ । ନଚକେତା ଧାଇଁଗଲା ଓ ମୁଣ୍ଡରେ ପୁନର୍ବାର ଆଘାତ ଦେଲା । ପେଣ୍ଡୁ ଉଠିଲା ଓ ଖସିଲା । ନଚକେତା ପୁଣିଥରେ ହେଡ୍ କଲା । ପୁଣିଥରେ । ପୁଣିଥରେ । ପୁଣିଥରେ । ପ୍ରାଣପଣେ ଚେଷ୍ଟାକରି ସେ ପେଣ୍ଡୁଟିକୁ ଶୂନ୍ୟରେ ରଖୁଛି । ତଳେ ପଡ଼ିବାକୁ ଦେଉନି । ମାଟି ଉପରେ ଖସିପଡ଼ି ସ୍ଥିର ରହିବାକୁ ଦେଉନି । ଗୋଲ୍ ପୋଷ୍ଟ ନାହିଁ । ଲକ୍ଷ୍ୟସ୍ଥଳ ନାହିଁ । ଏକ କାମନା ଆକାଂକ୍ଷା ଭଳି ପେଣ୍ଡୁ ରହିଛି ଶୂନ୍ୟରେ ଓ ଖେଳୁଛି ଉଠାପକା ଖେଳ । ପେଣ୍ଡୁଟିର ରଙ୍ଗ ଛାଡ଼ି ଯାଉଛି । ଦିଶୁଛି କ୍ରମେ ଲୁମଛଡ଼ା କୁକୁର ପରି ଅପରିଚ୍ଛନ୍ନ, ବିବର୍ଣ୍ଣ । ସାରା ପଡ଼ିଆରେ ଘୂରିଘୂରି, ଚକ୍କର କାଟି ନଚକେତା କ୍ଲାନ୍ତ । ଏକ ସମୟରେ ପଡ଼ିଆର ଗୋଟିଏ ପ୍ରାନ୍ତରୁ ଶୂନ୍ୟେଶୂନ୍ୟେ ପେଣ୍ଡୁଟିକୁ ଗୋଡ଼ରେ ଏକ ଶକ୍ତ ପ୍ରହାର ଦେଲା ସେ ଓ ପଡ଼ିଆର ଅପର ପ୍ରାନ୍ତରେ ପଡ଼ି ପେଣ୍ଡୁଟି ଗଡ଼ିଗଡ଼ି ଗଲା ସଡ଼କ ଉପରକୁ । ଦ୍ରୁତ ଗତିରେ ଯାଉଥିବା ଗୋଟିଏ ଟ୍ରକର ପଛ ଚକ ତଳେ ପଡ଼ି ବଲ୍‌ଟି ଫାଟି ଲେଗ୍‌ଟେଗ୍ ହୋଇଗଲା ।

ନଚକେତା ଧୀରେ ଧୀରେ ସଡ଼କ ଆଡ଼କୁ ଆସିଲା । ଆସି ପଡ଼ିଆର ଶେଷରେ, ସଡ଼କ କଡ଼ରେ ଠିଆ ହେଲା । ପଛରେ ପଡ଼ିଆ । ଆଗରେ ସଡ଼କ । ସଡ଼କ ଉପରେ ଲେଗ୍‌ଟେଗ୍ ପେଣ୍ଡୁ । ପଡ଼ିଆରେ ଗୋଲ୍‌ପୋଷ୍ଟ ନାହିଁ । ପେଣ୍ଡୁରେ ପବନ ନାହିଁ । କ୍ଷତବିକ୍ଷତ ସେ । ନଚକେତା ସଡ଼କ ଉପରକୁ ଉଠିଲା । ପେଣ୍ଡୁଟିର ଧ୍ୱଂସାବଶେଷକୁ ଉଠାଇ ରାସ୍ତା ଆରପଟର ବୁଦା ଭିତରକୁ ଫିଙ୍ଗିଦେଲା ଓ ବାମକୁ ଘୂରି ସଡ଼କ ଉପରେ ଦୃପ୍ତ ପଦପାତରେ ଆଗେଇଗଲା । ଯାଇ ପହଞ୍ଚିଲା ଏକ ରାଜନୈତିକ ଦଳର କାର୍ଯ୍ୟାଳୟରେ । ସେଠାରେ ଦଳର ଜିଲ୍ଲା ସଭାପତି ଉପସ୍ଥିତ ଥିଲେ । ତାଙ୍କୁ ଦେଖି ସହାସ୍ୟ ବଦନରେ ଅଥଚ ପରିହାସପୂର୍ଣ୍ଣ ସ୍ୱରରେ କହିଲେ, ଆସ ନଚକେତା, ଆସ । କଣ ନିଷ୍ପତ୍ତି କଲ ?

ନଚକେତା କହିଲା : ସାର୍ ! ମୁଁ ଆପଣଙ୍କ ସହିତ ସାମିଲ ହୋଇ କାମ କରିବାକୁ ପ୍ରସ୍ତୁତ ।

ଜିଲ୍ଲା ସଭାପତି କହିଲେ : ବାଙ୍କତାର ପରିଚୟ । ତେବେ ଏଇ ଗୋଟିଏ ସାମାନ୍ୟ ଅଥଚ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବା ପାଇଁ ତୁମେ ବହୁତ ସମୟ ନଷ୍ଟ କଲ । ମୁଁ ତୁମକୁ ଏ ପ୍ରସ୍ତାବ ଦେବା ଦିନଠାରୁ, ଆଗପଛ କିଛି ନ ଭାବି, ତୁରନ୍ତ ତୁମେ ଏ ନିଷ୍ପତ୍ତି ନେଇଯିବା ଉଚିତ୍ ଥିଲା । ଏତେବେଳକୁ ବହୁତ ଦୂର ଆଗେଇ ଯାଇଥା'ନ୍ତ । ଏବେ ବି ଅବଶ୍ୟ ବେଶୀ ଡେରି ହୋଇନାହିଁ । ତମଭଳି ଦୃଢ଼ମନା, ଶାରୀରିକ ସୌଷ୍ଠବ ଓ ଶକ୍ତି ତଥା ବ୍ୟକ୍ତିତ୍ୱ ସମ୍ପନ୍ନ ଯୁବକ ଆମ ଦଳ ପାଇଁ, ସଂଗଠନ ପାଇଁ, ଏ ଦେଶ ପାଇଁ ଖୁବ୍ ଦରକାର ।

ନଚିକେତା ମୁଣ୍ଡକୁ ସାମାନ୍ୟ ଝୁଙ୍କାଇ କହିଲା : ସାର୍ !

ଜିଲ୍ଲା ସଭାପତି କହିଲେ : ରାଜନୀତି ପ୍ରତ୍ୟେକ ଉଚ୍ଚାଭିଳାଷୀ ଯୁବକର ଏକମାତ୍ର ଲକ୍ଷ୍ୟସ୍ଥଳ ହେବା ଆବଶ୍ୟକ । ମୁଁ କହିଲି— ଲକ୍ଷ୍ୟସ୍ଥଳ; ଆଶ୍ରୟସ୍ଥଳ ନୁହେଁ । କିନ୍ତୁ ଅଧିକାଂଶ ଯୁବକ ସବୁଦିଗରେ ବିଫଳ ହେବାପରେ, ଏପରିକି ବିଗଭ୍ରଷ୍ଟ ହୋଇଯିବା ପରେ ଯାଇ ଅନ୍ତିମ ଆଶ୍ରୟସ୍ଥଳ ମନେ କରି ଏଠାକୁ ଆସୁଛନ୍ତି । ସେ ଭୁଲ୍ । ତେବେ ତମକଥା ଅଲଗା । ତମେ ଜଣେ ଉତ୍ତମ ଫୁଟବଲ ଖେଳାଳୀ ଥିଲ । କଲେଜରେ ପିଲାଙ୍କର ନେତୃତ୍ୱ ମଧ୍ୟ ନେଉଥିଲ । ଦେଖ, ରାଜନୀତିରେ ପେଣ୍ଡୁଖେଳର ଉତ୍କଣ୍ଠା ଅଛି, ଆନନ୍ଦ ଅଛି । ସନ୍ତୋଷ ମଧ୍ୟ ରହିଛି । ଏଠି ମଧ୍ୟ ନିଜ ପକ୍ଷର ସହାୟତାରେ ପ୍ରତିପକ୍ଷକୁ କାଟାଇ କାଟାଇ, କେଳେ ବଳେ କୌଶଳେ ତମେ ଲକ୍ଷ୍ୟସ୍ଥଳରେ ପହଞ୍ଚିବ । ସିଂହାସନ ଆଡ଼କୁ ମାଡ଼ିଯିବ । ଗୋଲ ସ୍କୋର କରିବ । ଆସନ ଦଖଲ କରିବ । ଦର୍ଶକ ଉଲ୍ଲସିତ ହୋଇ ତାଳି ବଜାଇବା ପାଇଁ ସବୁଠି ଉପସ୍ଥିତ ଥାଆନ୍ତି । ଆସ । ମାଡ଼ିଯାଅ ।

ନଚିକେତା ଆଗେଇ ଗଲା । ଜିଲ୍ଲା ସଭାପତି ହାତ ବଢ଼ାଇ କରମର୍ଦ୍ଦନ କଲେ ଓ ବସିବା ପାଇଁ ନଚିକେତାକୁ ଚେୟାର ଦେଖାଇ ଦେଲେ ।



# ଜଣେ ହାକିମ

ବିକାଶ ସେଦିନ ବନ୍ଧୁ ମହଲରେ ତାଙ୍କ ବୁଢ଼ା କଥା କହୁଥିଲା । ବିକାଶ ଯେ ଜଣେ ପ୍ରଚଣ୍ଡ କୁର୍‌ଚୁଣ୍ଡିଆ ପିଲା, ଏକଥା ତା ବନ୍ଧୁମାନେ ଭଲରୂପେ ଜାଣନ୍ତି । ଚାଲିଗଲା ଶତାବ୍ଦୀରେ ମାଁ ପୁରାତନ ପ୍ରସ୍ତର ଯୁଗର ପିଲାମାନେ ହାତ ଦେଉଥିବେ । ଇଏ ତ ଚାଲିଯାଉଥିବା ରେଳରେ ହାତ ଦେଇଦେବ । 'ଆମ ବୁଢ଼ା' ବୋଲି ସିଏ ଯାହାଙ୍କୁ କହେ, ସେ ତା' ଦପ୍ତରର ମୁଖ୍ୟ ।

ବିକାଶ ତ ବିନା ଉପକ୍ରମଣିକାରେ କଥା କହେନା । ସେ କହିଲା, ତଳସ୍ତରରୁ କିରାଣି ଚାକିରି ଜୀବନ ଆରମ୍ଭ କରିଥିବା ଜଣେ ମଣିଷର ନିଦା ବ୍ୟକ୍ତିସତ୍ତାକୁ ବିସର୍ଜିତ କରିବାକୁ ହେଲେ, ତାକୁ ଅଫିସର୍ କରି ଦିଆଯାଏ । ଏମିତି ତ ଅନେକବର୍ଷ ଧରି କିରାଣୀ ଚାକିରି କରି ଆସୁଥିବା ବାପୁଡ଼ାଟି କ୍ରମେ ଆକାଙ୍କ୍ଷାହୀନ ଓ ଆତ୍ମପ୍ରତ୍ୟୟଶୂନ୍ୟ ପାଲଟି ଯାଇ-ଥାଏ । କେବଳ ରଣ୍ଡି ଓସ୍ତାଦ୍ ଉପରିସ୍ଥମାନେ ସେମାନଙ୍କର ବୋଲକରା ଏଇ ଅନୁଗତ ଗୁବୁଡ଼ିଆ କଣ୍ଢେଇଟିକୁ ଦୟାବଶତଃ ପ୍ରମୋଶନଟିଏ ଦେଇଦିଅନ୍ତି । 'ଡିଭାଏଡ୍ ଏଣ୍ଡ ରୁଲ୍' ପରି ମାନ୍ଧାତା ଅମଳର ଗଛ ଗୁଞ୍ଜିରେ ନିଶ୍ଚିନ୍ତ ହୋଇ ମାରୁଥିବା ଉପରିସ୍ଥମାନେ ଏହାପରି ଭାବେ ସେଇ ଗୋଟିକିଆ ନିଦା ମଣିଷଟିକୁ ଦି'ଭାଗ କରିଦିଅନ୍ତି । ତା'ପରେ ଚେତାଇ ଦିଅନ୍ତି, ଏଣିକି ତମେ ଆମ ଲୋକ ହୋଇଗଲ । ଗୋଟାପଣେ ଆମଲୋକ । ଶାସକର ଲୋକ । ତମଠୁ ତଳକୁ ବାକି ଯେତେ ରହିଲେ

ସେମାନେ ସମସ୍ତେ ହେଲେ ଶାସିତ । ଏଇ ଗୁରୁବାଣୀକୁ ଘୋଷୁ ଘୋଷୁ କୃତଜ୍ଞତାର ଝାଳରେ ବୁଡ଼ ଯାଉଥିବା ବଚରାଟି ମୋଟେ ସଚେତନ ହୋଇପାରେ ନାହିଁ, ତେଣିକି ତାକୁ ପ୍ରବଞ୍ଚନାସୂତ ବ୍ୟବହାର କରି ଗୁଳଥିବା ଦମ୍ଭୀଲୁ ସର୍ବେସର୍ବାମାନଙ୍କ ଦ୍ୱାରା ହିଁ ସେ ନିଜେ କେତେ ଦଯୁମାସୂଭାବେ ଶାସିତ ହୋଇ ଶେଷ ସୁଦ୍ଧା ଶୋଷିତ ହୋଇଯାଇଛି ! ଉପର ଲୋକଙ୍କର ତ କେବେ ହେଁ ଆତ୍ମା କରିବା ଭଳି କୋମଳ ଅନୁଭବ (ହୁଏତ ହୃଦୟ) ନଥାଏ । ଯେଉଁ ତଳିଆ ଲୋକମାନେ ବି ଏଇ କାର୍ଟୁନ୍‌ଟି ପ୍ରତି ସମ୍ବେଦନଶୀଳ ହୋଇଥାନ୍ତେ, ସେମାନେ ବରଂ ପଚାରନ୍ତି, ଦିଲ୍ଲୀ କା ଲଡ୍‌ଡୁ ଖାଉଛନ୍ତି ? କେମିତି ? ସୁଆଦ ଲାଗୁଚି ନା ? ଏମିପରି ସର୍ବାଦାଗ ଗ୍ରୁପ ମଧ୍ୟ ଦେଇ ଗତି କରୁକରୁ ମଣିଷଟି ତା'ର ସୂକ୍ଷ୍ମ ପ୍ରବଣତାଠାରୁ, ମଣିଷପଣିଆଠାରୁ ଦୁରେଇ ଯାଉଥାଏ । ଯେମିତି ଆମ ମହାପାତ୍ର ସାର୍‌·····ମନ୍ତବ୍ୟଟି ଉପରେ ଆଲୋଚନା କରିଥିବା ବକାଶର ବନ୍ଧୁମାନେ ଜାଣନ୍ତି, ମହାପାତ୍ର ସାର୍ ନାମକ ହାକମଟି ତାଙ୍କ ହେଡ୍ ଅଫିସ୍‌ର ଗଡ୍‌ଫାଦର୍‌ମାନଙ୍କ ପ୍ରତି କେତେ ଭୟାତୁର ଓ ତଳିଆ କର୍ମଚାରୀମାନଙ୍କଠାରେ, ଧରାପଡ଼ ଯାଉଥିବା ପରି, କେତେ ଟାଣୁଆ !

ବକାଶ ଥରେ ମହାପାତ୍ର ସାର୍‌ଙ୍କୁ କହିଲା : ଆପଣଙ୍କ ସ୍ତରର ଜଣେ ସରକାରୀ ହାକମ କୌଣସି ଗୁରୁତ୍ୱପୂର୍ଣ୍ଣ ଗସ୍ତରେ ଯିବାବେଳେ, ସାଙ୍ଗରେ ଜଣେ ସହକାରୀଙ୍କୁ ବା ଅନ୍ତତଃପକ୍ଷେ ପି.ଏ.କୁ ନେବା କଥା । ସରକାରୀ ଗାଡ଼ି ତ ଯାଏ । ବଚରା ପି.ଏ.ଟି କିଛି ଅନୁଭୂତି ସହିତ କିଛି ଭତ୍ତା ମଧ୍ୟ ପାଇଯାଆନ୍ତା ଏ ମହଙ୍ଗା ବଜାରରେ !

ମହାପାତ୍ର ସାର୍ ପଚାରିଲେ : ବିନା ପି.ଏ.ରେ କଣ ଗସ୍ତ କରି ହେବନାହିଁ ?

: ହେବନାହିଁ ବୋଲି ମୁଁ କେତେବେଳେ କହିଲି ? ଯଦି ହେଉନଥାନ୍ତା, ତେବେ ହେଉଛି କେମିତି ? ସେକଥା ନୁହେଁ ଯେ, କେତେକ ଆବଶ୍ୟକ ଅନୁଭୂତିରୁ ବଚରା ବଞ୍ଚିତ ହେଉନାହିଁ କି ?

ମହାପାତ୍ର ସାର୍ ଖୋଞ୍ଚା ଦେଲେ : ଘରେ ଉଦ୍ଧାବଢ଼ା କରୁଥିବା ଲୋକର ତାରକା ଯୁଦ୍ଧ, ନଓ୍ୱାଜ ସରିଫ—ବେନଜୀର୍ ରାଜମାତା କମ୍ପା ରାମ ଜନ୍ମଭୂମି—ବାବରୀ ମସଜିଦ୍ ବିଷୟରେ ମୁଣ୍ଡ ଖରାପ କରିବା କଣ ଦରକାର ?

ବିକାଶ ହସିହସି ବିସ୍ମୟ ପ୍ରକାଶ କଲା : ଆପଣଙ୍କ ଶେଷତମ ଜ୍ଞାନ ଗାରିମାରୁ ଏଇ ଉଦାହରଣଟି ଦେଲେ ପରା !

ସେଦିନ, ତା'ପରେ, ନିଜଠୁ ସାମାନ୍ୟ ତଳ ହାକିମଙ୍କୁ ମହାପାତ୍ର ସାର୍ ବଡ଼୍ ବଡ଼୍ ହୋଇ କହୁଥିବା ବିକାଶ ଶୁଣିଲା : ଆଜି-କାଲିକା ଟୋକାମାନେ ବାଲୁଙ୍ଗାମୀ, ଆଡ଼୍ଡା, ଝିଅଙ୍କ ପଛରେ ଲୁଙ୍ଗ୍ ପୁଙ୍ଗ୍ ଇତ୍ୟାଦିରେ ମସ୍ଗୁଲ୍ ରହି, ଦିନେ ସୁଦ୍ଧା ପୁସ୍ତକ ନ ଧରି, ବାପା ଦାଦାଙ୍କ ଅର୍ଥଶ୍ରାଦ୍ଧ କରାଇ, କପିଫପି ଭରସାରେ ଯାଇତାଇ ଏମ୍.ଏ. ପର୍ଯ୍ୟନ୍ତ ପାଶ୍ କରି ଯାଉଛନ୍ତି । ଚାକିରି ନ ମିଳିଲେ, କାହିଁକି ବା ମିଳିବ, ଶେଷକୁ କିରାଣୀ ହୋଇ ଯାଉଛନ୍ତି । କହୁଛନ୍ତି କଣ, ନା, ଆମେ ପୋଷ୍ଟ-ଗ୍ରାଜୁଏଟ । ସେଇ ଏମ୍.ଏ. ପଢ଼ି ତ ପିଲାଏ ଫେର୍ ଆଇ.ଏ.ଏସ. ହୁଅନ୍ତି । କରେ, ପୋଷ୍ଟ-ଗ୍ରାଜୁଏଟ ଯଦି, ପୋଷ୍ଟ-ଗ୍ରାଜୁଏଟ ଭଳି କଥାବାର୍ତ୍ତା କର !

ତଳ ହାକିମ ନରମ ପ୍ରଶ୍ନ କଲେ : କଣ ହେଲା ସାର୍ ?

: କଣ ଆଉ ହେବ ? ଆମ କିରାଣୀମାନଙ୍କର ଆମ ସହିତ ଟୁର୍ କରିବାକୁ ଇଚ୍ଛା ହୁଏ ।

: ବେଶ୍ କଥା, ତଳ ହାକିମ କହି ଚାଲିଲେ : ଆମକୁ ବେଳେ-ବେଳେ ଟୁର୍‌ରେ କିରାଣୀଙ୍କ କାମ କରିବାକୁ ପଡ଼େ । ସେମାନଙ୍କ ମଧ୍ୟରୁ ଜଣେ ସାଙ୍ଗରେ ଗଲେ ଆମର ବହୁତ ସୁବିଧା ହୁଅନ୍ତା ତ !

: ଆପଣ ବି କି ଦାୟିତ୍ୱଶୂନ୍ୟ କଥା ନ କହୁଛନ୍ତି ! ଜାଣନ୍ତି ? କାମ କରିବାକୁ ନୁହେଁ, ସେମାନେ ଅଫିସ୍ କାମରୁ ମୁକ୍ତି ପାଇବା

ସହିତ ଟି.ଏ., ଡି.ଏ ପାଇବାକୁ ଟେ୍ରନ୍‌ରେ ଯିବାକଥା ଭାବୁଛନ୍ତି । ଏମିତିରେ ସରକାରୀ ତହବିଲର ଅଜସ୍ର ଟଙ୍କା ଅକାରଣରେ ଅପଚୟରେ ପଡ଼ିଯିବନି ?

ସବୁ ଶୁଣି ବିକାଶର ଜିଭ ଖଲ୍‌ଖଲ୍ ହେଲା । ସେ ସହେନା । କିନ୍ତୁ ସେଦିନ ନିଜକୁ ସମ୍ଭାଳି ନେଲା ।

ଆଉଦିନେ, ପାଖ ସହରର ବ୍ୟାଙ୍କରେ ଇ.ଆର୍.ଆର୍.ପି. ଋଣ ବାବଦରେ କିଛି ଜରୁରୀ ଆଲୋଚନା ପାଇଁ ସରକାରୀ ହାକିମ ହିସାବରେ ମହାପାତ୍ର ସାର୍‌ଙ୍କର ଯିବା କାର୍ଯ୍ୟକ୍ରମ ଥିଲା । ଅଫିସ୍ ଜିପ୍ ବାହାର କରିବା ପାଇଁ ସେ ଡ୍ରାଇଭରକୁ ଆଦେଶ କରି ସାରିଥା'ନ୍ତି । ଫାଇଲପତ୍ର ସହ ନିଜ ଦପ୍ତରୀରୁ ଆଟାଚି ଧରି ମହାପାତ୍ର ସାର୍ ଜିପ୍ ପାଖକୁ ଆସିଲା ବେଳକୁ ଜିପ୍ ଭିତରୁ ବିକାଶ କହୁଛି : ସାର୍, ଶୀଘ୍ର ଆସନ୍ତୁ !

ମହାପାତ୍ର ଅବାକ୍ ହେଉଛନ୍ତି : ଆପଣ ?

: ଯିବାପରି ! ବିକାଶର ଆମୋଦିତ ପ୍ରଶ୍ନ ।

: କୁଆଡ଼େ ? ମହାପାତ୍ର ସାର୍‌ଙ୍କ ବିସ୍ମୟ ।

: କୁଆଡ଼େ ଟି ? ବିକାଶ ପଚାରୁଛି ଡ୍ରାଇଭରକୁ ।

: ବ୍ୟାଙ୍କ । ଡ୍ରାଇଭରର ଉତ୍ତର ।

: ଆପଣ କୁଆଡ଼େ ? ମହାପାତ୍ର ସାର୍‌ଙ୍କର ବିରକ୍ତି ।

: ଅଫିସିଆଲ୍ କାମରେ । ବିକାଶର ଶ୍ଳେଷ ।

: ଓହ୍ଲାନ୍ତୁ, ଓହ୍ଲାନ୍ତୁ ! ମହାପାତ୍ର ସାର୍‌ଙ୍କର ଜିଦ୍ ।

: ଆପଣ କେବଳ ଜିଦ୍‌ରେ ଅଟକି ରହି ଏକାଏକା ଅଫିସ୍ କାମରେ ଯିବାଭଳି ଦୁଃସାହସ କରୁଛନ୍ତି । ଆଜିକାଲି ସରକାରୀ କର୍ମଚାରୀ-

ମାନଙ୍କ ଉପରେ କେମିତି ଆକ୍ରମଣ ହୁଏ, ଆପଣ ତ ସେସବୁ କଥା ଖବରକାଗଜରୁ ପଢ଼ୁଥିବେ ! ବିକାଶ କହିଲା ।

: ମୁଁ ସେଭଳି କାମନ ସମ୍ବାଦ ପଢ଼େନା । ଆପଣ ଅଫିସ୍ ଗାଡ଼ି ଜପ୍‌ରେ ବସିଛନ୍ତି କାହିଁକି ? ଯାଆନ୍ତୁ; ନିଜ କାମ କରନ୍ତୁ ।

ମହାପାତ୍ର ସାର୍‌ଙ୍କ ଶାଁ ଶାଁ ସ୍ୱରରୁ ବିକାଶ ତାଙ୍କ କ୍ରୋଧ ବାରିଲା । କେଜାଣି କାହିଁକି ଏଇ ହାକିମଟି ପ୍ରତି ତାର ଖାତିର ଆସେ ନାହିଁ । ବରଂ ଛିଗୁଲାଇବାକୁ ଇଚ୍ଛା ହୁଏ । ସେ କହିଲା : ଗାଡ଼ି ଯେଉଁଠାକୁ ଯାଉଚି, ସେଇଠି ମୋର ଟିକିଏ କାମ ଅଛି । ଟୁର୍‌ରେ ନନେଲେ ନାଇଁ, ଆପଣ ମତେ ନଚେତ୍ ଛୁଟି ଦିଅନ୍ତୁ । ଏଇ ରଖନ୍ତୁ ଦରଖାସ୍ତ । ଜଣେ ଚିହ୍ନାଲୋକ ହିସାବରେ ଅନ୍ତତଃ ଆପଣଙ୍କର ଏଇ ଅଫିସ୍ ଗାଡ଼ିରେ ଟିକେ ଲିଫ୍ଟ୍ ଦିଅନ୍ତୁ ।

ବିକାଶର ଛୁଟି ଦରଖାସ୍ତ ମହାପାତ୍ର ସାର୍‌ଙ୍କ ହାତରେ । ମହାପାତ୍ର ସାର୍ ବୋଧେ ଖୁବ୍ ରାଗିଗଲେ । କାରଣ (ଖୁବ୍ ରାଗିଗଲେ ଯାଇ ସେ ଏମିତି କହିଥାନ୍ତି) କହିଲେ : ଆପଣ ସବୁକଥା ଜାଣନ୍ତି । ୟୁ ନୋ ଏଭ୍‌ରିଥିଂ । କିନ୍ତୁ ତଥାପି ହେଲେ ମଧ୍ୟ ସୁଦ୍ଧା ଆପଣ ବୁଝିବେନି । ଡେଲି ପ୍ରତିଦିନ ଆପଣ ଏପ୍ରକାର ଝାମେଲା କରୁଛନ୍ତି !

ତା'ପରେ ସେ ଗାଡ଼ିରେ ବସିଗଲେ । ଗାଡ଼ି ଚାଲିଲା । ସେ ବିକାଶର ଦରଖାସ୍ତଟିକୁ ଚିରି ଫିଙ୍ଗିଦେଲେ । ତାହା ପବନରେ ଉଡ଼ିଗଲା । ବିକାଶ ଡ୍ରାଇଭର ପଟକୁ ମୁହଁ ବୁଲାଇ ମୁରୁକି ହସିଲା । ଗାଡ଼ି ଚାଲିଥିଲା ।

ମହାପାତ୍ର ସାର୍ ସାମନାକୁ ଚାହିଁ ପ୍ରଶ୍ନକଲେ : ଆପଣ କେତେ ବଡ଼ କାମରେ ବାହାରିଛନ୍ତି ବୋଲି କହୁଥିଲେ ଟି ?

ବିକାଶ କହିଲା : କାମ ଆଉ କଣ ? ମୋର ଗୋଟେ ବଦ୍‌ଖୋଇ ଅଛି । ବିଭିନ୍ନ ସ୍ଥାନ ବୁଲି ଦେଖିବାର ଆଗ୍ରହ ମୋର ଖୁବ୍ ବେଶୀ । ଗୋଟିଏ ଜାଗାକୁ ବାରମ୍ବାର ଯାଇପାରିଲେ ମୁଁ ଅଧିକ ଖୁସି ହୁଏ ।

: କାମରେ ନା ବେକାର ବେକାର ?

: କାମରେ ହେଲେ ଭଲ ।

: ଏବେ ଆପଣ କ କାମରେ ଯାଉଛନ୍ତି ?

: କିଛି ଅନୁଭୂତି ପାଇଁ ।

: ଆପଣଙ୍କର ମୂଲ୍ୟହୀନ ଅନୁଭୂତିରେ ଅଫିସ୍ ବା ସରକାରଙ୍କର କି ଲାଭ ?

: ସରି ସାର୍, ମୂଲ୍ୟହୀନ ଅନୁଭୂତି କହିଲେ ନା ମୂଲ୍ୟବାନ ଅନୁଭୂତି କହିଲେ ଟି ? ଗାଡ଼ିର ଶବ୍ଦରେ ଠିକ୍ ଶୁଣିପାରିଲି ନାହିଁ । ପ୍ଲିଜ୍ ରିପିଟ୍ !

: ମୂଲ୍ୟହୀନ ହେଉ ବା ଅମୂଲ୍ୟ, କେବଳ ଆପଣଙ୍କ ଫାଙ୍କା ବୁଲାବୁଲିରୁ ଆପଣ ଯେଉଁ ବ୍ୟକ୍ତିଗତ ଅନୁଭୂତିର ଲାଳସା ରଖୁଛନ୍ତି, ସେଥିପାଇଁ ଅଫିସ୍ ଆପଣଙ୍କୁ ଟି.ଏ., ଡି.ଏ. କାହିଁକି ଦେବ ?

: ନ ଦେଇପାରେ । କିନ୍ତୁ ଆପଣ ମୋର ଦରଖାସ୍ତଟିକୁ ଛାଡ଼ି ଦେଇଛନ୍ତି ! ବିକାଶ ମନେ ପକାଇଦେଲା ।

ମହାପାତ୍ର ସାର୍ ନୀରବ ।

ଗାଡ଼ି ଚାଲିଥାଏ ।

ରାସ୍ତାରେ, ସାମ୍ନାପଟେ ଦୂରରେ, ବୁଢ଼ାଟିଏ ବାଁ ହାତକୁ ଅଣ୍ଟାରେ ଥୋଇ ଡାହାଣ ହାତରେ ବାଡ଼ିଟିଏ ଧରି ନଇଁନଇଁ ଚାଲୁଥିବା ଦେଖି ବିକାଶ କହିଲା : ଦେଖନ୍ତୁ ବୁଢ଼ାଟିକୁ ! ଗୋଡ଼ରେ ଶକ୍ତି ନାହିଁ । କେବଳ ଭଗବାନ ହିଁ ତାକୁ ଚଲେଇ ନେଉଛନ୍ତି । ଚଲେଇ ନେଉଛନ୍ତି ବୋଲି କିଏ କହିବ ? ଏକପ୍ରକାର ବାଟ କଢ଼ାଇ ନେଉଛନ୍ତି ବୋଲି କହିଲେ ଠିକ୍ ହେବ ।

ମହାପାତ୍ର ସାର୍ ଟାହୁଲ କଲେ : ଆପଣ ତା'ହେଲେ ଏଇସବୁ ଅନୁଭୂତ ସଂଗ୍ରହ କରିବାକୁ ଆସିଛନ୍ତି ?

ବିକାଶ ନୀରବ ।

ଗାଡ଼ି ଚାଲିଥାଏ ।

ରାସ୍ତାର ଗୋଟିଏ ସ୍ଥାନରେ, ବାଁ ପଟେ କିଛି ଫୁଟିଥିବା ଫୁଲ ଦେଖି ମହାପାତ୍ର ସାର୍ କହିଲେ : ଫୁଲ ସର୍ବଦା ମନୋହର । ଆପଣ ଗୋପୀନାଥ ମହାନ୍ତିଙ୍କର ଗୋଟେ ଉପନ୍ୟାସ ପଢ଼ିଛନ୍ତି, ଯହିଁରେ ଫୁଲ ପ୍ରେମୀ ସାହେବ ଚରିତ୍ରଟିଏ ଥିବ । ସାହେବଙ୍କ ବଗିଚାର ଗୋଲାପ ଗଛ ମୂଳରେ ଦେବାପାଇଁ ଘୁଷୁରି ଗୁହ ସଂଗ୍ରହ କରୁଥିବ ତାଙ୍କର ଗୋଟେ ଚାକରା କର୍ମଚାରୀ । କଣ ସେ ବହିର ନାଁଟା ତ ! ଜଭ ଅଗରେ ଅଛି ।

ବିକାଶ, ମହାପାତ୍ର ସାର୍ଙ୍କ ମୁହଁ ଉପରେ ଥରେ ସଶ୍ରଦ୍ଧ ଦୃଷ୍ଟି ବୁଲାଇଆଣି ଚାଳକୁ ଚାହିଁବା ପରେ କହିଲା : ସବୁ ହାକିମଙ୍କ ପରି ଆପଣଙ୍କର ମଧ୍ୟ ଫୁଲ ପ୍ରତି ପ୍ରଗାଢ଼ ମମତା ଅଛି ଜାଣି ମତେ ବଡ଼ ଆନନ୍ଦ ଲାଗିଲା ସାର୍ । ତାଛଡ଼ା ମୋର ଗୋଟିଏ ଭୁଲ୍ ଧାରଣା ଥିଲା, ଆପଣଙ୍କ ସ୍ତରର ଅଫିସରମାନେ କେବଳ ଅଫିସ ମାନୁଆଲ, ସାର୍କୁଲାର ଆଦି ପଢ଼ୁଥିବେ । କିନ୍ତୁ ଆପଣ ଉପନ୍ୟାସ ମଧ୍ୟ ପଢ଼ନ୍ତି ଜାଣି ଆଜି ମୋର ସେ ଭ୍ରମ ଦୂର ହେଇଗଲା । ଗୋପୀବାବୁ ଏକଥା ଜାଣିଲେ କେତେ ଖୁସି ନହେବେ !

ମହାପାତ୍ର ସାର୍ ନୀରବ ଓ ଗମ୍ଭୀର ।

ଗାଡ଼ି ଚାଲିଥାଏ ଦ୍ରୁତ ଗତିରେ ।

ଫୁଲ ଇଲାକା ପାର ହେଇ ଯାଇଥାଏ । ରାସ୍ତା କଡ଼ର ଆମ୍ବଗଛ ମାନଙ୍କରୁ ଭସି ଆସୁଥିବା ବଉଳ ବାସ୍ନାରେ ଉଚ୍ଛାହିତ ହେଇଥିବା ଭଳି ଭଙ୍ଗୀରେ ବିକାଶ ପଚାରିଲା : ଆମ୍ବ ବଉଳର ବାସ୍ନା ଆପଣଙ୍କୁ କେମିତି ଲାଗେ ? କେମିତି ଲାଗେ ସ୍ୱାର୍ଥହୀନ କୁହୁତାନ କୋଇଲିର ?

ମହାପାତ୍ର ସାର୍ କିଛି କହିଲେ ନାହିଁ । ଆଉ କିଛିଦୂର ଗିବା ପରେ, ରାସ୍ତାର ଦୁଇପାଖରେ ମାଇଲ ମାଇଲ ବ୍ୟାପୀ ଖୋଳା ଯାଇ-ଥିବା ଚଉଡ଼ା ନାଳ ଦେଖି ବିକାଶଙ୍କୁ ମହାପାତ୍ର ସାର୍ ପଚାରିଲେ : ଜାଣନ୍ତି, ଏଇ ରାସ୍ତାର ନାଳ ସବୁ କାହିଁକି ଖୋଳାଯାଇଛି ?

: ବୋଧହୁଏ ଜଳସେଚନ ପାଇଁ । ବିକାଶ କହିଲା ।

: ଜଳସେଚନ ପାଇଁ ? ପ୍ରଶ୍ନକରି ମହାପାତ୍ର ସାର୍ ହସିଲେ । ହଁ, ସେ ହସିପାରନ୍ତି ମଧ୍ୟ । ବିକାଶ ଜାଣେ । ଯଦି କାହାକୁ ତାଚ୍ଛଲ୍ୟ କରିବାର ଥାଏ ତେବେ ସେ ହସିଥାନ୍ତି ।

ମହାପାତ୍ର ସାର୍ କହିଲେ : ରାସ୍ତା ଦୁଇପାଖର ଏ କୃତ୍ରିମ ଜଙ୍ଗଲ ଦେଖୁଛନ୍ତି ? ଏଠି ରୋପଣ କରାଯାଇଥିବା ଗଛଗୁଡ଼ିକୁ ଗାଈ ଗୋରୁଙ୍କ ମୁହଁରୁ ରକ୍ଷାକରିବା ପାଇଁ ଏଇ ନାଳ ଖୋଳାଯାଇଛି । ଫଳରେ ରାସ୍ତା ଉପରର ଗାଈଗୋରୁ ନାଳ ଡେଇଁ ଯାଇପାରିବେନି ।

ବିକାଶ ହଠାତ୍ ଦେଖାଇଲା : ଏଇ ଦେଖନ୍ତୁ, ଗାଈଟିଏ କେମିତି ସେପଟେ ଯାଇ ଗଛ ଖାଇଯାଉଛି । ଓହ୍ଲାଇ ଘଉଡ଼ ଦେବା କି ?

: ଗାଈ ଗୋରୁମାନେ ଚିରକାଳ ନିର୍ଲଜ । ବାରଣ ମାନନ୍ତି ନାହିଁ । ଗୋଟେ ଗୋଟେ ଗୋଠଖଣ୍ଡିଆ ଗାଈ ଏମିତି ଥାଆନ୍ତି । ଗଉଡ଼ର ଠେଙ୍ଗାକୁ ବି ସେମାନଙ୍କର ପରବାୟ ନାହିଁ । କହିସାରି ମହାପାତ୍ର ସାର୍ ବିରାମ ନେଲେ ଓ ଯୋଗକଲେ : ଗାଈ ଘଉଡ଼ାଇବା ଆମ କାମ ନୁହେଁ ।

କିଛି ସମୟର ୟାରବତା ପରେ ମହାପାତ୍ର ସାର୍ ପୁନଶ୍ଚ କହିଲେ : ପଞ୍ଚାବନ ମସିହା ଆଡ଼କୁ, ଆପଣ ସେତେବେଳେ ଜନ୍ମହୋଇ ନଥିବେ, ଏ ଅଞ୍ଚଳ ଘନଜଙ୍ଗଲ ଥିଲା । ଭଲ ଦାନ୍ତକାଠି ମିଳୁଥିଲା !

ବିକାଶ ଜଣେ କୁଶଳୀ ଖୋସାମତିଆ ପରି କହିଲା : ଆପଣ ତ ବେଶ୍ ଡାଟା ରଖିଛନ୍ତି !

: ଏସବୁ ଗପ୍ପ ନୁହେଁ, ଆମ ଆଖି ଦେଖିଲା କଥା । ହାଇ-ସ୍କୁଲରେ ପଢ଼ିଲା ବେଳକୁ ପ୍ରତିଦିନ ଆମେ ଏଇ ଜଙ୍ଗଲ ବାଟ ଦେଇ ପାଞ୍ଚ କିଲୋମିଟରେ ବାଟ ଚାଲିଚାଲି ଯାଉଥିଲୁ । ଫେରୁଥିଲୁ । ଏ ଜଙ୍ଗଲରେ ବାଘ ରହୁଥିଲେ । ଆମେ ସେମିତି କଷ୍ଟ କରୁଥିଲୁ । କୃଷ୍ଣ ବି ମିଳୁଥିଲେ । ଆଜିକାଲି ଭଳି ପାଠ ପଢ଼ିବାଟା ସେତେବେଳେ କଣ ଏତେ ସହଜ ଥିଲା ? ଭେରି ଡିଫିକଲ୍ଟ । ଘୋର କଷ୍ଟ । ସେତେବେଳେ ହେଡ଼ମାଷ୍ଟରଙ୍କୁ ଦେଖିଲେ ପିଲାମାନେ ମୂର୍ଚ୍ଛା ପକାଉଥିଲେ ।

: ଏତେ ବେଶୀଦୂର୍ ? ବିକାଶ ବୋକାପରି ଅଭିନୟ କଲା ।

ମହାପାତ୍ର ସାର୍‌ଙ୍କ ଆଖି ଢମାଢମା ହୋଇଗଲା । ସେ ଗମ୍ଭୀର ହୋଇଗଲେ । ଗାଡ଼ି ଚାଲିଥିଲା । କିଛିଦୂର ଯାଏଁ କେବଳ ଗାଡ଼ିର ଶବ୍ଦ । କଥାବାର୍ତ୍ତା ବନ୍ଦ ।

ସହର ହୋଇଗଲା ।

ବିକାଶ ପଚାରିଲା : ବ୍ୟାଙ୍କରେ କିଛି ସମୟ ରହିବେ ତ ସାର ?

: କାହିଁକି ? ଟାଉନ ବୁଲିବେ ?

: ନା, ବ୍ୟାଙ୍କ୍‌ରେ ମୋର ଜଣେ ବନ୍ଧୁ ପ୍ରବେଶନାରୀ ଅଫିସର ଅଛି । ତା' ସାଙ୍ଗରେ······

ବିକାଶକୁ କଥା ଶେଷ କରିବାକୁ ନଦେଇ ମହାପାତ୍ର ସାର୍ ପାଟିବୁଜି ଦୁଇଥର ମୁଣ୍ଡ ହଲାଇବା ପରେ କହିଲେ ବା ପ୍ରଶ୍ନକଲେ : ଓଃ, ଆପଣଙ୍କର ପି.ଓ. ବନ୍ଧୁ ମଧ୍ୟ ଅଛନ୍ତି······

: ହଁ, ଭାଗ୍ୟବଶତଃ ! ବିକାଶ କହିଲା ।

ଗାଡ଼ି ଯାଇ ବ୍ୟାଙ୍କ ପାଖରେ ରହିଲା । ମହାପାତ୍ର ସାର୍ ବିକାଶକୁ ଆଦେଶ ଦେଲେ : ଆପଣ ଗାଡ଼ିରେ ବସିଥାନ୍ତୁ । କହିସାରି ସେ ବ୍ୟାଙ୍କ ଭିତରକୁ ପଶିଗଲେ ସାମନାପଟୁ । ବିକାଶ ଭ୍ରୂଲତା ଉଠାଇ କିଛିକ୍ଷଣ

ଚିତ୍କାରିକଲା । ତା’ପରେ ଗାଡ଼ିରୁ ଓହ୍ଲାଇ ବାଁ କଡ଼ରେ ଥିବା ଦ୍ୱାର ଦେଇ ବ୍ୟାଙ୍କ ଭିତରକୁ ଗଲା । ତା’ ବନ୍ଧୁଟି ଦ୍ୱାରଠାରୁ ଅଳ୍ପ ଦୂରରେ ହିଁ ବସିଥିଲା । ଶ୍ରକାଶକୁ ଦେଖି ସେ ଆଉଖଣ୍ଡେ ଚଉକି ମଗାଇଲା । ଦୁହେଁ କଥାବାର୍ତ୍ତାରେ ମଗ୍ନ ରହିଲେ । କିଛିସମୟ ପରେ ନିଜ ଡାହାଣପଟକୁ ଲକ୍ଷ୍ୟକରି ଶ୍ରକାଶ ଦେଖିଲା, ସେ ଯେଉଁ ଦ୍ୱାରପଟୁ ଭିତରକୁ ଆସିଥିଲା, ସେପଟୁ ଗୋଟେ କଙ୍କାଳସାର ଗାଈ ଆସି ଦ୍ୱାର ପାଖରେ ପଡ଼ିଥିବା ଟେବୁଲ ଉପରୁ ଫାଇଲଟିଏ ଟାଣିନେଉଛି । ସେ ଚିତ୍କାର କଲା, ‘ଖାଇଗଲା···ଖାଇଗଲା······।’

ଜଣେ ପିଲା ଗାଈ ପଛରେ ଗୋଡ଼େଇଗଲା ଓ ତା ମୁହଁରୁ ଫାଇଲଟି ଟାଣିଆଣିଲା । ଶ୍ରକାଶ ତା ବନ୍ଧୁକୁ ପ୍ରଶ୍ନକଲା : ଏଇଠା ଇଆଇଆର୍‌ପି ଗାଈ କରେ ?

: ଇଆଇଆର୍‌ପି ଗାଈ, ମାନେ ? ବନ୍ଧୁଟି ହସିହସି ପଚାରିଲା ।

: ଶଳା, ଦୁର୍ନୀତି ତ ସବୁଠି ପଶିଲା । ଶୁଣାଯାଉଛି ତମେ ବ୍ୟାଙ୍କବାଲାଏ ମଧ୍ୟ କୁଆଡ଼େ ଲାଞ୍ଚ ଖାଇବା ଆରମ୍ଭ କରିଦେଲଣି । ଗରିବ ଲୋକଙ୍କୁ ଇଆଇଆର୍‌ପି ଲୋନ୍ ଦେଇ ଖାତାରେ ହ’ହଜାର ଲେଖିଲେ, ଗାଈ କିଣୁଚ ପନ୍ଦର ଶହରେ । ଗୋମାତାକୁ କେନ୍ଦ୍ରକରି ଦୁର୍ନୀତି କଲେ ଗୋମାତା ସହିବ ? ଆସି ଫାଇଲ ମୁଣ୍ଡା ସଫା କରି-ଦେବାକୁ ବସିଲଣି ।

: ତମେ ଶଳାଏ ତ ଘର ସଚ୍ଚା ! ଶ୍ରକାଶର ବନ୍ଧୁ କହିଚାଲିଲା : ତମ ସରକାରୀ ଲୋକଙ୍କ ଲାଗି ଏସବୁ କାରବାର । ତମେ ହେଲ ଅସଲ ଗୁରୁ । ଶିଖେଇବା ଲୋକ । ସରକାରୀ ଅଫିସରମାନଙ୍କ ମାଧ୍ୟମରେ ଯେତେସବୁ ଋଣ ବଣ୍ଟାହେଉଛି, ସବୁଠି ଏମିତି ଜାଲିଆତି ଚାଲିଲାଣି । ତମ ବୁଢ଼ା ତ ଏଇନା ଆମ ବୁଢ଼ା ପାଖରେ ବସି ପର୍‌ସେଣ୍ଟେଜ୍ ବିଷୟରେ ଟୁପ୍‌ଟାପ୍ ହେଉଥିବ !

ବିକାଶ ପ୍ରତିବାଦ କଲା : ଯା'ବେ ! ଆମ ବୁଢ଼ା ସେମିତି ନୁହେଁ । ସରକାରୀ ଟଙ୍କା ବେଶି ଖର୍ଚ୍ଚ ହେଇଯିବ ବୋଲି ସିଏ ପରା ପି.ଏ.କୁ ସୁଦ୍ଧା ସାଙ୍ଗରେ ନେଇ ଟୁର୍ ଯାଏନା !

ବନ୍ଧୁଟି କହିଲା : ଆରେ ସରକାରୀ ଟଙ୍କା ପିନା ଦେବନ କି ଖାଇବନ; ଏଠି ତ ପବ୍ଲିକ୍ ଟଙ୍କା ଉପରେ ପରସେଣ୍ଟେଜ୍ ପାଇଁ କଥାବାର୍ତ୍ତା କରୁଛୁ ।

ଏତିକବେଳେ ବିକାଶ ଦେଖିଲା ମହାପାତ୍ର ସାର୍ ବ୍ୟାଙ୍କ ମ୍ୟାନେଜରଙ୍କ ପ୍ରକୋଷ୍ଠରୁ ବାହାରୁଛନ୍ତି । ସେ ବିକାଶ ପାଖକୁ ଆସିଲେ ଓ ମୁଲାୟମ ସ୍ୱରରେ ପ୍ରଶ୍ନକଲେ : ଆପଣ ଭିତରକୁ ଆସି ଯାଇଛନ୍ତି ?

ବିକାଶର ବନ୍ଧୁ ଜଣେ ପିଲାକୁ ଡାକି କହିଲେ : ଚେୟାରଟେ ଆଣ୍ ।

ମହାପାତ୍ର ସାର୍ କହିଲେ : ନା, ଥାଉ ଥାଉ । ଆମେ ତ ଯିବାକୁ ବାହାରିଲୁଣି ।

ବିକାଶ ଉଠିଲା । ସେ ଦୁହେଁ ଯାଇ ଜିପ୍‌ରେ ବସିଲେ । ଜିପ୍ ଗଡ଼ିଲା । ମହାପାତ୍ର ସାର୍ ବିକାଶକୁ କହିଲେ : ଆପଣ ଆଜି ଅଧାଦିନର ଛୁଟି ପାଇଁ, ଅଫିସ୍‌ରେ ପହଞ୍ଚିବା ପରେ, ଦରଖାସ୍ତ ଦେଇଦେବେ ।

ବିକାଶ ପଚାରିଲା : କାରଣ ?

ମହାପାତ୍ର ସାର୍ କହିଲେ : ଆପଣ ବୁଲିଆସିବେ, ମନପୂର୍ତ୍ତି, ବନ୍ଧୁଦର୍ଶନ କରିବେ, ଗୁଲିଖଟିରେ ମାତିବେ ବୋଲି ଅଫିସ ଆପଣଙ୍କୁ କାମରୁ ରିହାତି ଦେବ, ପୁଣି ଟି.ଏ., ଡି.ଏ. ବି ଦେବ । ଆପଣମାନେ ଯଦି ଏମିତି ଅଫିସ ପ୍ରତି ଅବହେଳା କରିବେ ଓ ଅକାରଣରେ ଭତ୍ତା ମଧ୍ୟ ପାଇବେ, ତେବେ ହେଡ୍ ଅଫିସକୁ ମୁଁ କି ଉତ୍ତର ଦେବି ?

ବିକାଶ ସ୍ୱର ବଦଳାଇଲା : ଆପଣ ଏବେ ମତେ ଭର୍ତ୍ସନା କଲେ କି ସାର୍ ମୁଁ ସେସବୁ ସହିଯିବାକୁ ମୋର ଭାଗ୍ୟ ବୋଲି ମନେ

କହିବ । ମୋର ବନ୍ଧୁଟି ଆଜି ଆପଣଙ୍କର ଏପରି ପ୍ରଶଂସା କରୁଥିଲା, ଏପରି ପ୍ରଶଂସା କରୁଥିଲା, ଏପରି ପ୍ରଶଂସା କରୁଥିଲା ଯେ, କଣ କହିବ ? ଆପଣଙ୍କ ପ୍ରତି ତାର ଧାରଣା ଖୁବ୍ ଉଚ୍ଚ । ସେ କହୁଥିଲା, ଆପଣଙ୍କ ପରି ଅମାୟିକ ଓ ସଚ୍ଚୋଟ ସରକାରୀ ଅଫିସର୍ ସେ ଆଉ କୋଉଠି ଦେଖିନି । ଅଥଚ, ମାଛ କାହାର ନଖାଇ ମଧ୍ୟ ସାରା ଜଗତର ବୈରୀ ହେଲାଭଳି, ଆପଣ ହାଇଲି ମିସ୍ ଅଣ୍ଡରଷ୍ଟୁଡ୍ ବୋଲି ସିଏ ଦୁଃଖ ପ୍ରକାଶ କରୁଥିଲା ।

ମହାପାତ୍ର ସାର୍ ତାହା ଶୁଣି ଖୁବ୍ ହସହସ ହେଲେ । ତାଙ୍କର ମୁଖମଣ୍ଡଳ ଝଲସି ଉଠିଲା । ବିକାଶ ତାଙ୍କର ସେ ପ୍ରକାର ଆନନ୍ଦ ଉଦ୍ଭାସିତ ରୂପ ପୂର୍ବରୁ କେବେ ଦେଖିନଥିଲା ।



# ସାରା ରାତି ଗୋଟେ ପାଗଳା କୁକୁର

ଗତ ରାତିର କଥା । ଗୋଟେ ପାଗଳା କୁକୁର ସାରାରାତି ମତେ କାମୁଡ଼ିବା ପାଇଁ ଗୋଡ଼ାଇଥିଲା । ମୁଁ ଆଉ କ'ଣ କରନ୍ତି ? ତାର ବିଷାକ୍ତ ଦାନ୍ତ କବଳରୁ ରକ୍ଷାପାଇବା ପାଇଁ ପ୍ରାୟ ପାହାନ୍ତା ପ୍ରହରଯାଏଁ ପ୍ରାଣମୂର୍ଚ୍ଛା ଦୌଡ଼ିଥିଲି । ପ୍ରଥମେ ମୁଁ ବୃତ୍ତାକାରଭାବେ ଦୌଡ଼ିଲି ଓ କ୍ରମେ ପରିଧି ଛୋଟ ହୋଇ ହୋଇ ଗଲା । କୁକୁରଟି ଗୋଲାକାରଭାବେ ଅନୁଧାବନ ନ କରି ଜ୍ୟା କାଟିଲା ଭଳି ଗୋଡ଼ାଇଲା । ତେଣୁ, ତା'ପରେ, ମୁଁ ସିଧା ରାସ୍ତାରେ ଦୌଡ଼ିଲି ଓ ପରେ ପରେ ଅଙ୍କାବଙ୍କା ଭାବେ ।

ମୁଁ ଟିକିଏ ସତର୍କ ହୋଇଥିଲେ ସେମିତି ଅସୁବିଧାରେ ପଡ଼ି ନ ଥା'ନ୍ତି ।

ସେତେବେଳକୁ ସେ ରାସ୍ତା ନିର୍ଜନ । ମୁଁ ଚାଲି ଚାଲି ଯାଉଥିଲି । କିଛି ଦୂରରେ କୁକୁରଟି ଠିଆ ହୋଇଥିଲା, ସାମ୍ନାରେ । ଦୂର ବତି-ଖୁଣ୍ଟରେ ବତିଟିଏ ଜଳୁଥିଲା । ତା'ର ସାମାନ୍ୟ ଆଲୁଅରେ ମୁଁ କୁକୁରଟିକୁ ଦେଖିପାରିଥିଲି ।

ମୋର ଭୁଲ୍ ନିଶ୍ଚୟ; କୁକୁରଟି ପ୍ରଥମେ ମତେ ଛେଳିଟିଏ ପରି ଦିଶିଥିଲା । ତା'ପରେ ଅବଶ୍ୟ ମୋ ମନରେ ଯୁକ୍ତିଟିଏ ଉଙ୍କି ମାରିଲା । ବାଟ ଚାଲୁ ଚାଲୁ ମୁଁ ଭାବିନେଲି, ଏତେ ରାତିରେ ସହର ରାସ୍ତାରେ ଛେଳିଟିଏ ବୁଲୁଥିବା କେବେ ଦେଖାଯାଇ ନଥିଲା ! ତେଣୁ ଛେଳି ନ

ନହୋଇପାରେ । କୁକୁରଟି ମୁଣ୍ଡପୋତି ଠିଆ ହୋଇଥିଲା । ମୁଁ ଭାବିଲି, ହୁଏତ ଘୁଷୁରିଟିଏ ହୋଇପାରେ । କିନ୍ତୁ ଆଉ କିଛିଦୂର ଆସିବା ପରେ, ମତେ ଦେଖାଗଲା, କୁକୁରଟି ଜିଭ ଲହଲହ କରୁଚି ।

କୁକୁରଟିକୁ ଦେଖିବା ପୂର୍ବରୁ, ବାଟ ଚାଲୁ ଚାଲୁ, ମୁଁ ଆମ ଦପ୍ତରର ମୁଖ୍ୟଙ୍କ ବିଷୟରେ ଭାବୁଥିଲି । ସେ ଆମ ଦପ୍ତରକୁ ଆସିବା ପରଠାରୁ ଆସ୍ତେ ଆସ୍ତେ ଆମେ, ଅନ୍ୟମାନେ, ତାଙ୍କର ସ୍ୱରୂପ ସମ୍ପର୍କରେ କେମିତି ଧାରଣା ସବୁ ହାସଲ କରିଚାଲିଚୁ ସେଇ କଥା ହିଁ ଭାବୁଥିଲି । କେତେକ ଘଟଣାକୁ ମନ ଭିତରେ ଓଲଟପାଲଟ କରୁଥିଲି ।

ପ୍ରଥମ ଦେଖାରେ ହିଁ ଜଣେ ଲୋକ ସମ୍ପର୍କରେ, ତାହା ପୁଣି ବର୍ତ୍ତମାନ ସମୟରେ, ମନରେ ସମ୍ପୂର୍ଣ୍ଣ ଧାରଣା ସୃଷ୍ଟି କରିବା ବରଂ ସହଜ ହୋଇପାରେ; କିନ୍ତୁ ଆମ ସହରର କୌଣସି ରାସ୍ତା ଉପରେ, ରାତି ସମୟରେ, ଠିଆ ହୋଇଥିବା ଗୋଟିଏ ପ୍ରାଣୀ ପ୍ରକୃତରେ ଛେଳି କି ଘୁଷୁରି କି କୁକୁର ତାହା ଜାଣିବା ବିଲ୍‌କୁଲ୍ ସହଜ ନୁହେଁ । ପ୍ରାଣୀଟିକୁ ଆବିଷ୍କାର କରିପାରିବା ହିଁ ବଡ଼କଥା । କାରଣ ଆମ ସହରର ରାସ୍ତାଗୁଡ଼ିକରେ ଆବଶ୍ୟକୀୟ ବତୀଖୁଣ୍ଟ ଥିଲେ ବି; ସବୁ ଖୁଣ୍ଟରେ ବତୀ ଜଳୁ ନଥାଏ । ଆମ ସହରର ମ୍ୟୁନିସିପାଲିଟି ବା ଆଞ୍ଚଳିକ ଉନ୍ନୟନ ସଂସ୍ଥା ବୁଝିଛନ୍ତି ଓ ଧରିନେଇଛନ୍ତି; ବିଜୁଳିବତୀ ପ୍ରଗତିର ପ୍ରତୀକ; ଅନ୍ଧାର ଦୂର କରିବା ଅଥବା କେବଳ ଅନ୍ଧାର ଦୂର କରିବା ଏହାର ଉଦ୍ଦେଶ୍ୟ ନୁହେଁ । ତା'ଛଡ଼ା ସବୁ ଜାଗାରୁ ସବୁ ଅନ୍ଧାର ଦୂର କରିଦେବା ମଧ୍ୟ ସହଜ କଥା ନୁହେଁ । ସହଜ ହେଲେ ମଧ୍ୟ ଆବଶ୍ୟକ ନୁହେଁ । ଅନ୍ଧାର କିଛି ନ ରହିଲେ ଆଲୁଅର ବା ମହତ୍ତ୍ୱ କ'ଣ ? ତଥାପି ସବୁ ଅନ୍ଧାର ଦୂର କରିଦେବା ଭଳି ଅହମିକା ରଖାଯାଇପାରେ । କିନ୍ତୁ କେବଳ ମ୍ୟୁନିସିପାଲିଟିର ଅସ୍ତିତ୍ୱ ସୂଚାଇ ଦେବାପାଇଁ ଏତେଗୁଡ଼ାଏ ବତୀ ଜଳାଇବା ମୋଟେ ଦରକାର ନାହିଁ । କାଁ ଭାଁ ଗୋଟେ ଅଧେ ମିଞ୍ଜି ମିଞ୍ଜି ହୋଇ ଜଳିବା ହିଁ ଯଥେଷ୍ଟ ।

ଯାହାହେଉ, ବତୀଟିଏ ଜଳୁଥିଲା ବୋଲି, ମ୍ୟୁନିସିପାଲିଟିର ଅସ୍ତିତ୍ୱ ସ୍ୱୀକାର କରିବା ସହିତ କୁକୁରଟିର ଅସ୍ତିତ୍ୱ ସମ୍ପର୍କରେ ବି ମୁଁ

ସଚେତନ ହୋଇପାରିଲି; ନଚେତ୍ ଅନ୍ଧାରରେ ତ ମୁଁ କିଛି ହିଁ ଦେଖିପାରେ ନାହିଁ । ବତି ଜଳୁ ନ ଥିଲେ କଳା କିଟି କିଟି ଅନ୍ଧାର । ସେଥିରେ ପୁଣି କୁକୁରଟିର ରଙ୍ଗ କଳା । ବତି ନଥିଲେ ମୁଁ କୁକୁରଟିକୁ ଦେଖିପାରି ନ'ଥାନ୍ତି । ମୁଁ ତା' ପାଖାପାଖି ପହଞ୍ଚିବା ମାତ୍ରେ ସେ ନିଃଶବ୍ଦରେ ଆସି ମୋର ଗୋଡ଼କୁ କାମୁଡ଼ି ଧରିଥା'ନ୍ତା । ମୁଁ ଦୌଡ଼ିବାର ସୁଯୋଗ ବି ପାଇ ନଥା'ନ୍ତି ।

ମୁଁ ନିଜେ ବି କମ୍ ବିଚିତ୍ର ନୁହେଁ । ଏକେ ତ ଅନ୍ଧାରରେ ବି ମୋର ଗନ୍ତବ୍ୟ ସ୍ଥଳରେ ପହଞ୍ଚିବା ଇଚ୍ଛା ବା ଚେଷ୍ଟାକୁ ଦମନ କରେ ନାହିଁ । ସେଥିରେ ପୁଣି କୁକୁରଟି ଯଦି ମତେ କାମୁଡ଼ି ଦେଇଥାନ୍ତା, ନିଜର ଚିକିତ୍ସା ବ୍ୟବସ୍ଥା କରିବା ବଦଳରେ, ଅନ୍ଧାର ଦୂର କରିବା ଦାୟିତ୍ୱରେ ଥିବା ମ୍ୟୁନିସିପାଲିଟି ବିରୁଦ୍ଧରେ ଜନମତ ସୃଷ୍ଟି କରିବା ବଦଳରେ, ସିଧା ଯାଇ ମ୍ୟୁନିସିପାଲିଟି ସାମ୍ନାରେ ବିକ୍ଷୋଭ କରିଥାନ୍ତି । କାହାକୁ ଗାଳିଗୁଲଜ କରିଥା'ନ୍ତି । ଅଯଥା ଅପଯଶ ମୁଣ୍ଡାନ୍ତି ।

ଆମ କର୍ମଚାରୀ ୟୁନିୟନର ସ୍ଥାନୀୟ ନେତା ଥରେ ସେଇ କଥା କହୁଥିଲେ । ସେ ମତେ ପଚାରିଲେ : ତମେ ଆମକୁ କିଛି ନ ଜଣାଇ ମିତ୍ର ସାହାବଙ୍କ ସହିତ କାହିଁକି ଯାଇ ଯୁକ୍ତିତର୍କ କଲ ? ତାଙ୍କୁ କୌଣସି ପ୍ରଶ୍ନ କରିବାକୁ ତମର କି ଅଧିକାର ଅଛି ?

ମୁଁ ତାଙ୍କର ପ୍ରଶ୍ନକୁ ଗୁରୁତ୍ୱ ନ ଦେଇ ଉଚ୍ଚାରଣ କଲି : ମିତ୍ର ସାହାବ୍ ?

ତା'ପରେ କହିଲି : ମୁଁ ଭାବିଥିଲି କେବଳ ଇଂରେଜମାନେ ସାହେବ୍ ଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସ ପଢ଼ିବା ପରେ 'ସାହେବ' ଶବ୍ଦଟି ପ୍ରତି ହିଁ ମୋର ଘୃଣା ହେଉଛି ।

ସେ ଚେତାଇ ଦେଲେ : ମୋ ପ୍ରଶ୍ନର ଉତ୍ତର ଦିଅ ।

ମୁଁ କହିଲି : ମୋ ପ୍ରତି ଅବିଚାର ହୋଇଥିଲା ।

: ତମେ ଆମକୁ କହିଲନି ?

: ଆପଣ କଣ କରିପାରିଥାନ୍ତେ ?

: ତାଙ୍କୁ ସେକଥା ପଚରା ଯାଇଥା'ନ୍ତା ?

: ଏବେ ପଚାରୁ ନାହାନ୍ତି ?

: ତମେ ତ ସବୁ ବିଭ୍ରାଟ କରିସାରିଚ ।

: ତା'ହେଲେ ପରିଣତିକୁ ମୋ ଉପରେ ଗୁଡ଼ି ନ ଦେଇ ଆପଣ ନିଜ ନାକ ଗଳାଉଛନ୍ତି କାହିଁକି ?

: ଆମେ ତା'ହେଲେ ଆଉ କାହିଁକି ଅଛୁ ?

: ଅପାରଗ ବୋଲି ଘୋଷିତ ହେଉ ନ ଥିବାରୁ ହୁଏତ ଆପଣ ଥାଇପାରନ୍ତି ।

: ମାନେ ?

: ମାନେ ଆଉ କ'ଣ ? ସ୍ତ୍ରୀ ଉପରେ ଅତ୍ୟାଚାର ଆରମ୍ଭ କରିଥିବା ଦୁର୍ବୃତ୍ତମାନଙ୍କୁ ଆକ୍ରମଣ କରିବା ବଦଳରେ ପୋଲିସକୁ ଖବର ଦେବା ନାଁରେ ପ୍ରାଣବିକଳରେ ଧାଉଁଥିବା ଲୋକମାନଙ୍କ ଭିତରେ ମୁଁ ନାହିଁ । ମୁଁ ଯଦି ଖଣ୍ଡିଆଖାବରା ହେବି, ତାହା ମୋର ପ୍ରାପ୍ୟ ବୋଲି ଭାବିନେବି । କିନ୍ତୁ ଆପଣ କର୍ମଚାରୀମାନଙ୍କ ନେତା ନା ମ୍ୟାନେଜ୍‌ମେଣ୍ଟର ଦାମ୍‌ଚା ? ଏଇ ଦେଶର ପୋଲିସ୍ ବି ତ ଦୁର୍ବୃତ୍ତମାନଙ୍କର ଏତେ ପଛିଆ ବାହାରେ ନାହିଁ ।

ମୁଁ ଟିକିଏ ଦମ୍ ନେବାପରେ କହିଲି : ମୋପ୍ରତି କରାଯାଇଥିବା ଅନ୍ୟାୟ ସମ୍ପର୍କରେ ଆପଣ ଜାଣନ୍ତି; ଅଥଚ ଆମର ନେତା ହିସାବରେ ହସ୍ତକ୍ଷେପ କରିବା ବଦଳରେ ମୁଁ ଆପଣଙ୍କ ଶରଣ ପଶିବାପାଇଁ ଆପଣ ଅପେକ୍ଷା କଲେ । ମୁଁ ଜାଣିଚି ମ୍ୟାନେଜ୍‌ମେଣ୍ଟ, ଆପଣଙ୍କ ପରି ନେତା-ମାନଙ୍କ କାନ୍ଧରେ ବନ୍ଧୁକ ରଖି ବ୍ୟୁରୋକ୍ରାସୀର ଗୁଳି ଫୁଟାନ୍ତି । ସେଇଥିପାଇଁ ସିନା ମିଳ; ଘର ମିଳ ସାହାବ୍ ପରା; କ'ଣ ପଦେ ଅଧେ

ଟେକାଟେକ କରି କହି ଦେଇଥିବ ଯେ, ଆପଣ ମତେ ମ୍ୟାନେଜ୍‌ମେଣ୍ଟ ବୋଲି ଭାବିବା ପର୍ଯ୍ୟନ୍ତ ନିଶାଗ୍ରସ୍ତ ହୋଇଯାଇଛନ୍ତି ?

ମତେ ଏବେ ସ୍ୱୀକାର କରିବାକୁ ପଡ଼ୁଛି, ଅନେକ ବିଷୟ ଉପରେ ମୋର ଜ୍ଞାନ ବୟସ ତୁଳନାରେ ବହୁତ କମ୍ । କାରଣ ହୁଏତ ଏୟା ଯେ ମୁଁ ଯାହା ବା ଯେତିକି ଦେଖେ, କେବଳ ତାହା ବା ସେତିକି ବୁଝେ ।

କିନ୍ତୁ ଗୋଟେ ନ ଦେଖିଲା ଯାଏଁ ଜାଣି ନପାରିବା ଭଳି ମୋର ଏଇ ଦୋଷ ହେତୁ, ବାଘକୁ ପୋଷାଯାଇ ତାକୁ ମଧ୍ୟ ଆଉଁସା ଯାଇପାରେ ବୋଲି ମୁଁ ବିଶ୍ୱାସ କରେନା ଓ ଯେକୌଣସି କୁକୁର, ଗୋଟେ ପାଗଳା କୁକୁର ହେଇପାରେ ବୋଲି ଭାବିପାରେନା । ମୋର ଏଇ ଅସଫଳତାକୁ କେନ୍ଦ୍ର କରି ଗୋଟେ ହୀନମନ୍ୟତା ବି; ଅନେକଦିନରୁ ମୋ ଭିତରେ ସୃଷ୍ଟି ହେଲଣି, କାରଣ ମୁଁ ଶୁଣିବାକୁ ପାଉଚି, ସମୟର ଦୁର୍ଭେଦ୍ୟ ପ୍ରାଚୀର ଭେଦ କରି କେହି କେହି ଏକବିଂଶ ଶତାବ୍ଦୀକୁ ମଧ୍ୟ ଦେଖି ପାରୁଛନ୍ତି ।

କୁକୁରଟିର ପାଖାପାଖି ମୁଁ ପହଞ୍ଚିଗଲି । କୁକୁର ଭୁକୁ ନଥିଲା । ମୁଁ ଦେଖିପାରିଲି ତାର ଜିଭ ଲହ ଲହ ହେଉଚି । ଜିଭ ଅଗ ଦେଇ ଥପ୍ ଥପ୍ ଲାଳ ତଳେ ପଡ଼ୁଚି । ଅନ୍ତତଃ ସେତିକବେଳେ ବି ମୁଁ ଟିକିଏ ସତର୍କ ହୋଇ ପାରିଥା'ନ୍ତି । ଅବଶ୍ୟ ସେତେବେଳେ ମନେପଡ଼ିଲା ନାହିଁ; ନଚେତ୍ ମୁଁ ଶୁଣିଥିଲି କେବଳ ଭୁକିଲା କୁକୁର କାମୁଡ଼ଇ ନାହିଁ ଓ ଜିଭରୁ ଲାଳ ଗଡ଼ୁଥିବା କୁକୁର ଗୋଟେ ପାଗଳା କୁକୁର ହୋଇ-ପାରେ । ସତ କହିବାକୁ ଗଲେ; କୁକୁରଟିକୁ କୁକୁରଟିଏ ବୋଲି ଜାଣିବା ପରେ ବି ମୋର ପିଲାଦିନଆ ଦମ୍ଭ ମୋ ଭିତରେ ଉଙ୍କିମାରିଲା ସିନା, ମୁଁ ବିଚଳିତ ହେଲି ନାହିଁ । ପିଲାଦିନେ ଏମିତି କେତେ କୁକୁରଙ୍କୁ ଲାଖ କରି ପଥର ମାରି ଘଉଡ଼ାଇଚି; ଆହତ କରିଚି । ଅବଶ୍ୟ ସେତେ-ବେଳେ ମୋର ଧାରଣା ନଥିଲା, ଏବେ ସିନା ଜାଣୁଚି କି, ଯେକୌଣସି କୁକୁର କାମୁଡ଼ିଲେ ବି ଚଉଦଟା ଇଞ୍ଜେକ୍‌ସନ ନେବାକୁ ପଡ଼େ । କାରଣ; ହୁଏତ, ଯେଉଁ କୁକୁରଟି କାମୁଡ଼ିଥିବ, ତାହା ଗୋଟେ

ପାଗଳା କୁକୁର ନ ହୋଇଥିବାର ରିସ୍କ ନେବାକୁ ଡାକ୍ତରଟିଏ ପ୍ରସ୍ତୁତ ହୁଏନା ।

ଆଜକାଲି ଏକଥା ଜାଣିସୁଦ୍ଧା ବେଳେବେଳେ ମୁଁ ଭୁଲିଯାଏ; ବରଂ ଏବେ ବି କୁକୁରମାନଙ୍କର ସହଜାତ ଭୟ ଉପରେ ମୁଁ ଯଥେଷ୍ଟ ଆସ୍ଥାବାନ୍ ଏବଂ ମୁଁ ଟିକିଏ ପୁରୁଣାକାଳିଆ ମଧ୍ୟ । ମୁଁ ବିଶ୍ୱାସ କରେ; କାହାକୁ ଆକ୍ରମଣ ନକଲେ ସେ ପ୍ରତି ଆକ୍ରମଣ କରେନା । ତେଣୁ ଦମ୍ଭ ସହକାରେ ଗୁଲୁ ଗୁଲୁ ମୁଁ କୁକୁରଟିର ପାଖାପାଖି ପହଞ୍ଚିଗଲି । କୁକୁରଟି ଏକାଡ଼ିଆଁକେ ଆସି ମୋଠାରୁ ପାଞ୍ଚ ହାତ ଦୂରରେ । ଭୁକାଭୁକ କରୁନି । ତା' ବନ୍ଦ ପାଟିରୁ ବି ଲାଳ ଝରୁଛି ।

ସଂଯୋଗକ୍ରମେ ମୋର ସ୍ମରଣ ହେଲା, ସକାଳେ ଜଣେ ବନ୍ଧୁ କହୁଥିଲେ, କଥାବାର୍ତ୍ତା କରୁନଥିବା ଲୋକ ଓ ଭୁକୁ ନଥିବା କୁକୁର ପ୍ରତି ସର୍ବଦା ସାବଧାନ ।

ହଠାତ୍ ମୋ ମନକୁ ଛୁଇଁଲା : ଏହା ଏକ ପାଗଳା କୁକୁର ହୋଇପାରେ ଓ ପାଗଳା କୁକୁରର 'ଭୟ' ଭଳି ସୂକ୍ଷ୍ମ ପ୍ରବଣତା ନରହିବା କଥା ।

ତେଣୁ ମତେ ହିଁ ପ୍ରଥମେ ଦୌଡ଼ିବାକୁ ପଡ଼ିଲା ।

ମୁଁ ଗୋଲ୍‌କାର ଭାବେ ଦୌଡ଼ିଲି ଓ କ୍ରମେ କୁକୁର ସହିତ ମୋର ଛକାପଞ୍ଝା ଖେଳ ଗୁଳିଲୁଭଳି ଅବସ୍ଥା ହେଲା ।

ମୋ ହାତରେ କିଛି ବି ଅସ୍ତ୍ର ନାହିଁ ଓ କୁକୁର ମତେ କାମୁଡ଼ିଲେ ବି ମୁଁ ତାକୁ କାମୁଡ଼ିବି ନାହିଁ ।

ତେଣୁ ଛକାପଞ୍ଝା ଛାଡ଼ି ମୁଁ ସିଧା ରାସ୍ତାରେ ଦୌଡ଼ିବା ଆରମ୍ଭ କରିଦେଲି । ଟି.ଭି.ରେ ମୁଁ ପି.ଟି. ଉଷାଙ୍କ ଦୌଡ଼ ଦେଖିଥିଲି । ଯଥାସାଧ୍ୟ ଆଗକୁ ଝୁଙ୍କି, ସଂପୂର୍ଣ୍ଣ ପାଦ ବଦଳରେ କେବଳ ପାଦର ଆଙ୍ଗୁଠିଗୁଡ଼ିକୁ ରାସ୍ତାରେ ଛୁଆଁଇ ଦୌଡ଼ିଲି ।

କୁକୁରଟି ଦୌଡ଼ୁଛୁ ପଛରେ । ମୋର ଧଇଁସଇଁ ସତ୍ତ୍ୱେ ମୁଁ ତାର ଧଇଁସଇଁ ଓ କ୍ରୋଧ ବାରି ପାରୁଥିଲି । ଆଗରେ ମୋ ପାଇଁ କେଉଁଠି ଶେଷ ଲକ୍ଷ୍ୟସ୍ଥଳ ନଥିଲା କି କେହି ରେଫରି ନଥିଲେ ।

କେବେକେବେ ମୁଁ ପଛକୁ ଚାହିଁଦେଉଥିଲି । ବିଶେଷ କରି ଯେଉଁ ସ୍ଥାନରେ ବିଜୁଳୀ ଖୁଣ୍ଟରେ ବତି ଜଳୁଥାଏ । କୁକୁରଟି ମୋର ଛାଇଭଳି ସମାନୁପାତିକ ଦୂରତାରେ ମତେ ଗୋଡ଼ାଉଥିଲା । କେବେ-କେବେ ମୋ ଗୋଡ଼କୁ କାମୁଡ଼ି ଧରିବା ଭଳି ମୁହଁରେ ପାଟି ପକାଇ ଦେଉଥିଲା ଶୂନ୍ୟରେ !

ଜାଣିପାରିଲି : ଏମିତି ଭାବରେ ଦୌଡ଼ିଲେ ବି, ମୁଁ ଯେତେ କ୍ଲାନ୍ତ ହୋଇ ପଡ଼ିଲଣି, ଖୁବ୍ ଶୀଘ୍ର ହିଁ କୁକୁରଟି ମୋ ଗୋଡ଼କୁ କାମୁଡ଼ି ଧରିବ ।

ମୁଁ ମୋ ଦୌଡ଼ିବା ପଦ୍ଧତି ବଦଳାଇ ଦେଲି । ସିନେମା-ମାନଙ୍କରେ, କୌଣସି ଜଟିଳ ପରିସ୍ଥିତିରେ ପଡ଼ି, କେବଳ ହାସ୍ୟ ସୃଷ୍ଟି କରିବାକୁ ହେଉ ପଛେ, ହାସ୍ୟାଭିନେତାମାନେ ଯେପରି ବଙ୍କାଟଙ୍କା ଭାବରେ ଦୌଡ଼ିଥାନ୍ତି, ସେମିତି ଦୌଡ଼ିଲି ।

ତଥାପି କୁକୁରଠାରୁ ମୋର ଦୂରତା ବଢ଼ୁ ନଥିଲା ।

କୁକୁରଟି ସତେ କି ମହାଉଲ୍ଲାସରେ, ଡେଇଁ ଡେଇଁକା, ପଛରେ ଗୋଡ଼ାଇଥିଲା ।

ଆଖପାଖରେ ଗଛଟିଏ ବି ଦିଶୁ ନଥିଲା । ମୁଁ ନିରୁପାୟ ହେଇ ପଡ଼ୁଥିଲି । ଦୌଡ଼ିବା ମୋର ଅଭ୍ୟାସରେ ପଡ଼ିଯାଇଥିଲା ଓ ମୁଁ ଭାବୁଥିଲି, କେଉଁଠି ନା କେଉଁଠି ବାଡ଼ଖଣ୍ଡେ ମିଳିଗଲେ ମୁଁ ପଛକୁ ବୁଲିପଡ଼ି କୁକୁରର ସାମ୍ନା କରିବି ।

ଦୌଡ଼ୁ ଦୌଡ଼ୁ ମୁଁ ଦେଖିବାକୁ ପାଇଲି, ଆଗରେ, କିଛି ଦୂରରେ, ଉଜ୍ଜ୍ୱଳ ଆଲୋକମାଳା । କିଛିଗୋଟେ ଉତ୍ସବ ଚାଲିଛି ।

ମନରେ ଟିକିଏ ଦମ୍ଭ ଆସିଲା । ଅନେକ ଲୋକ ସେଇ ପାଖରେ ବୁଲୁଥିବା ପରି ଦେଖାଯାଉଥିଲା । ଭିଡ଼ ଭିତରେ କୁକୁର ମତେ ଆଉ ଗୋଡ଼ାଇବ ନାହିଁ ଅଥବା ଭିଡ଼ ଦେଖି ଫେରିଯିବ ବୋଲି ମୁଁ ଭାବିଲି ଓ ଖୁବ୍ ଉତ୍ସାହରେ ଅବଶ ପାଦ ଦୁଇଟିକୁ ଆଶ୍ୱାସନା ଦେଇ ଦୌଡ଼ିଲି ।

*          *          *          *

ଆମ ଦପ୍ତରର ମୁଖ୍ୟ ହେଉଛନ୍ତି ଶ୍ରୀ ମିତ୍ର । ମିତ୍ର ସାର୍ । ଅଥବା ମିତ୍ର ସାହାବ । ସହକର୍ମୀମାନଙ୍କ ମଧ୍ୟରୁ କେହି କେହି କଥାବାର୍ତ୍ତା କରନ୍ତି କି, ଯଦି ସବୁ ଦପ୍ତରର ମୁଖ୍ୟ ଏପରି ହିଁ ହେଇଥାନ୍ତି; ତେବେ ସେମାନଙ୍କର ନାଁ ବା ସଂଜ୍ଞା ଯାହା ବି ହେଇଥାଉ, କୌଣସି ହାଲତରେ ସେମାନଙ୍କୁ ଅନ୍ତତଃ 'ମିତ୍ର' କୁହାଯାଇ ନପାରେ । ଶ୍ରୀ ମିତ୍ରଙ୍କର ସମର୍ଥକ ବୋଲି ଚିହ୍ନା ପଡ଼ିବାକୁ ଯେଉଁମାନଙ୍କର ଆଉ ପଇତା ବା ପଗଡ଼ି ଦରକାର ପଡ଼ୁନାହିଁ, ସେମାନଙ୍କ ସାମନାରେ ଏମାନେ ଶ୍ରୀ ମିତ୍ର ବଦଳରେ ଶ୍ରୀ ଶତ୍ରୁ ଉଚ୍ଚାରଣ କରି ଏକପ୍ରକାର ଉଲ୍ଲାସ ଅନୁଭବ କରନ୍ତି । ଜଣେ କେହି ଶ୍ରୀ ମିତ୍ରଙ୍କର ଏକ ବ୍ୟଙ୍ଗଚିତ୍ର ଆଙ୍କି ଅନ୍ୟମାନଙ୍କୁ ଦେଖାଇବା ପରେ ଏମିତି ଘଟଣା ଘଟିଥିଲା ।

ସକାଳେ, ଦପ୍ତରରେ, ଶ୍ରୀ ମିତ୍ରଙ୍କ ସହିତ, ଅନେକ ଦିନ ପରେ, ମୋର ପୁଣିଥରେ ଯୁକ୍ତିତର୍କ ହେଇଥିଲା ।

ମାତ୍ର ଛ'ବର୍ଷ ଚାଲିଥିବା ମୋର ଚାକିରି ଜୀବନରେ ମୁଁ ବୁଝି ସାରିଲିଣି ଯେ, ଉପରିସ୍ଥ ଅଧିକାରୀମାନେ ଦପ୍ତରର ତଳିଆ କର୍ମଚାରୀ-ମାନଙ୍କୁ ସେମାନଙ୍କ ସମର୍ଥକ ରୂପେ ଆଶା କରନ୍ତି । କେବଳ ପ୍ରଶଂସକ ରୂପରେ ନୁହେଁ । ତାହା ପୁଣି ମୁହାଁମୁହିଁ ପ୍ରଶଂସା ବା ବିନମ୍ର ଭାବ ପ୍ରଦର୍ଶନ ନକଲେ, ସେମାନେ ତାଙ୍କର ସମସ୍ତ ପ୍ରଶାସନିକ ଦକ୍ଷତା ସତ୍ତ୍ୱେ, ବିଲକୁଲ ବୁଝି ହିଁ ପାରନ୍ତି ନାହିଁ ଯେ, କେହି ଜଣେ ସେମାନଙ୍କ ସମ୍ପର୍କରେ ଉଚ୍ଚ ଧାରଣା ପୋଷଣ କରୁଥାଇପାରେ । 'ମୁଁ ଯାହା କରୁଛି ତାହା ନୁହେଁ, ମୁଁ ଯାହା କହୁଛି ତାହା କର' ବୋଲି ଏମାନେ ଆଦେଶ କରନ୍ତି ଓ ସେକଥା କେହି ଯଦି ଅମାନ୍ୟ କରେ; ତେବେ ପଞ୍ଜୁରୀ

ଭିତରେ ଥାଇ ମଧ୍ୟ ବେଳେବେଳେ ଖୋଲା ଜଙ୍ଗଲର ବାଘଭଳି ରଡ଼ି କରିଦିଅନ୍ତି ।

ମୁଁ ମୋର ଉପରିସ୍ଥମାନଙ୍କୁ ସମ୍ମାନ ନ ଦେଖାଇବା ଭଳି ଅସଂସ୍କୃତ ନୁହେଁ; କିନ୍ତୁ ବିନୟୀବନତ ଭାବେ କାନମୂଳ କୁଣ୍ଡାଇ ମୁଁ ତାହା ଦେଖାଇପାରେ ନାହିଁ । ଯଦିବା ମୁଁ ଚେଷ୍ଟା କରନ୍ତି, ଉପରିସ୍ଥ ଅଧିକାରୀମାନେ ମୁହୂର୍ମୁହୁ ବଦଳି ଚାଲୁଥିବାରୁ, ପୂର୍ବଲୋକ ଭଳି, ପରବର୍ତ୍ତୀ ଅଧିକାରୀ ଦୈନିକ ଦୁଇଟି ନମସ୍କାରରେ ସନ୍ତୁଷ୍ଟ ହୋଇପାରନ୍ତି କି ନାହିଁ ତାହା ଅନୁସନ୍ଧାନ କରିବାକୁ ମୋର ଆଗ୍ରହର ଅଭାବ ହୁଏ । ଧୈର୍ଯ୍ୟ ନଥାଏ । ଏତେ ଫୁର୍ସତ ବି ମିଳେ ନାହିଁ ।

କେଜାଣି ଶ୍ରୀ ମିଶ୍ର ଏକଥା କହିଥିବେ କି ନାହିଁ; କିନ୍ତୁ ମୋର ଜଣେ ସହକର୍ମୀ ଥରେ କହିଲେ କି, ଶ୍ରୀ ମିଶ୍ର କୁଆଡ଼େ କହିଛନ୍ତି, ମୋର ଅଯଥା ଦାମ୍ଭିକପଣିଆ ମୋର ହୀନମନ୍ୟତା ଛଡ଼ା ଆଉ କିଛି ନୁହେଁ !

ମୁଁ ଏକଥା କହିଥିଲି ଓ ହୁଏତ କେହି ଜଣେ ଶ୍ରୀ ମିଶ୍ରଙ୍କୁ ଫୋଡ଼ି ଦେଇ ଥାଇପାରେ ଯେ : ଶ୍ରୀ ମିଶ୍ର ବୋଧେ ଭାବନ୍ତି, ସେ ଯେଉଁ ଚେୟାର ଖଣ୍ଡିକ ହାସଲ କରି ପାରିଛନ୍ତି ସେଥିରେ ବସିବାର ଆକାଂକ୍ଷା ଭାରତର ପ୍ରଧାନମନ୍ତ୍ରୀଙ୍କର ବି ରହିବା ସ୍ୱାଭାବିକ । କିନ୍ତୁ ସମସ୍ତେ ତାଙ୍କଭଳି ସଫଳ, କରିତ୍କର୍ମା, ଭାଗ୍ୟବାନ ନୁହଁନ୍ତି ।

କେତେକ କାରଣରୁ କେବେକେବେ ମୋର ତାଙ୍କ ସହିତ ଯୁକ୍ତିତର୍କ ହୁଏ ଅଥବା ଏକମାତ୍ର ଏଇ କାରଣରୁ ମୋର ତାଙ୍କ ସହିତ ଯୁକ୍ତିତର୍କ ହୁଏ ଯେ, ମୁଁ ଚୁପ୍ ରହି ନ ପାରି, ତାଙ୍କ ସହିତ ଯୁକ୍ତିତର୍କ କରିଥାଏ ।

ଏଇ ଯେମିତି ସକାଳେ ଘଟିଥିଲା ।

ମୁଁ ଦଶ ମିନିଟ୍ ବିଳମ୍ବରେ ଦପ୍ତରରେ ପହଞ୍ଚିଲି ଓ ପହଞ୍ଚିଲା ବେଳକୁ ମୋ ନାଁରେ ଗୋଟିଏ କୈଫିୟତ୍ ପତ୍ର ଟାଇପ୍ ହୋଇ ସାରିଥିଲା ।

ମୁଁ ପହଞ୍ଚିବାମାତ୍ରେ ପିଅନ୍ ଗୋଟିଏ ଖାତା ସହିତ ଚିଠିଟି ଧରି ଆସିଲା ଓ ତାହା ନେଇ ଖାତାରେ ଦସ୍ତଖତ କରିବାକୁ ମତେ କହିଲା ।

ଠିକ୍ ସେତିକବେଳେ, ଘଟଣା ସମ୍ପର୍କରେ ଅବଗତ ଥିବା ମୋର ଜଣେ ସହକର୍ମୀ ବନ୍ଧୁ ଆସିଲା ଓ କହିଲା : ବୁଢ଼ା ଅନେକଦିନରୁ ତମ ଉପରେ ଚିଢ଼ିଥିଲା । ଆଜି ସୁବିଧା ପାଇଗଲା ।

ଏତିକି କହିସାରି ବନ୍ଧୁ ଜଣକ ଯୋଗକଲା : ଚିଠିଟି ଟାଇପ୍ କରିବାକୁ କହି ସେ ଏପଟେ ଆସିଥିଲା । ତା' ଉଚପେନ୍‌ର ସ୍ପ୍ରିଂଟି ବୋଧେ କାମ କରୁନ । ବାରମ୍ବାର ଦବେଇଲା ଦବେଇଲା, ନହେଲାରୁ ଜୋର୍‌ରେ ଦବେଇ ଦେଇ କହିଲା : ଯିଏ ଧୀର କଥାରେ ବୋଲ ମାନୁନ, ତାକୁ ଠିକଏ ପ୍ରେସର୍ ଦେବାକୁ ପଡ଼ିବ ।

ପିଅନ ହାତରୁ ମୁଁ ଖାତା ଓ ଚିଠିଟି ନେଲି । ଶ୍ରୀ ମିଶ୍ରଙ୍କ କକ୍ଷରେ ପ୍ରବେଶ କରୁ କରୁ ମୁଁ କହିଲି : ଭିତରକୁ ଆସିବାର ଅନୁମତି ନେବାକୁ ଆବଶ୍ୟକ ମନେକରୁନ । କହି ମୁଁ ଟିକେ ହସିଲି ।

ଭାବିଥିଲି ସେ କିଛି କହିବେନି; ଅଥଚ ସେ କହିଲେ : ଅନୁମତି ନେବାକୁ ତ କେହି କହୁନ ।

ମତେ କହିବାକୁ ସୁଯୋଗ ମିଳିଲା : କୁହାଯିବା କଥା । ପାରିଥାନ୍ତା ବି । କିନ୍ତୁ ଘଣ୍ଟି ବଜାଇଛନ୍ତି ଆପଣ; ଅଥଚ ମନ୍ଦିର ଭିତରେ ଆପଣ । ଆପଣ ଭକ୍ତ ହୁଅନ୍ତୁ ବା ଭଗବାନ, ଏବେ ନୟମତଃ ଆପଣଙ୍କ ସାମନାରେ ମୁଁ । କୁହନ୍ତୁ ।

: ମୋର ତ କିଛି ଶୁଣିବାର ନାହିଁ କି କହିବାର ନାହିଁ । ମୋର ଲିଖିତ କୈଫିୟତ ଦରକାର । ସେ କହିଲେ ।

: ଏ ଚିଠିରେ କଣ ଲେଖାଯାଇଚି ? ମୁଁ ପଚାରିଲି ।

: ପଢ଼ିକି ଦେଖନ୍ତୁ । ସେ କହିଲେ ।

: ମୁଁ କଣ ଏ ଚିଠିଟା ଦସ୍ତଖତ କରିନେବି ? ମୁଁ ପଚାରିଲି ।

: ସେଇଟା ତ ନିୟମ । ସେ କହିଲେ ।

: ଏଥିରେ କଣ ଲେଖା ହୋଇଛି କହିବେ କି ମୁଁ ଏଇଟା ଚିରିଦେବି ? ମୁଁ ତାଙ୍କ ଆଖିରେ ଆଖି ଥୋଇ କଠୋର ଭାବେ କହି ଓ ପର ମୁହୂର୍ତ୍ତରେ ସାମାନ୍ୟ ହସି ଯୋଗକଲି : ଆପଣ ଜାଣିପାରୁଥିବେ ଏପରି ଅବସ୍ଥାରେ ମୁଁ ଚାକିରି ରହୁ ବୋଲି ଚାହିଁବା ଭଳି ବୋକାମି କରୁନଥିବି ।

ସେ ସରଳଭାବେ କହିଲେ : ଆପଣ ଅଫିସକୁ କାହିଁକି ବିଳମ୍ବରେ ଆସିବେ, ତାର କୈଫିୟତ୍ ମଗାଯାଇଛି ।

ମୁଁ ହସି ହସି ପଚାରିଲି : ସତେ ନା! କଣ ? ଓ କହିଲି : ଜେଣ୍ଟଲ୍‌ମ୍ୟାନ୍ ! ଆପଣ କେବଳ ମତେ ଏ ପ୍ରଶ୍ନ ପଚାରିଛନ୍ତି ନା ଆଉ କେତେଜଣଙ୍କ ନାଁରେ ମଧ୍ୟ ଚିଠି ଟାଇପ୍ କରିଛନ୍ତି ?

ସେ ପଚାରିଲେ : କାହିଁକି ?

ମୁଁ କହିଲି : କାରଣ, ମୁଁ ତ ଅନ୍ତତଃ ଅଫିସ୍‌ରେ ପହଞ୍ଚିଗଲିଣି । କିନ୍ତୁ ଏବେ ବି ଆହୁରି ଅନେକ କର୍ମଚାରୀ ପହଞ୍ଚିନାହାନ୍ତି ।

: ସେକଥା କହିବାକୁ ଆପଣ କିଏ ? ସେ କ୍ରୋଧପ୍ରକାଶ କଲେ ।

: ଏଇଥିପାଇଁ କହିବାକୁ ପଡ଼ୁଛି ଯେ, ଆପଣ ଏଇଠି ଅଫିସ୍ ପରିଚାଳନା ବଦଳରେ ଶିକାର କରିବାକୁ ବସିଥିବା ପରି ଲାଗୁଛି ।

ସେ କିଛି କହିବାକୁ ଚାହୁଁଥିଲେ । କିନ୍ତୁ ମୁଁ କହିଚାଲିଲି : ଯଦି ଶିକାର ହିଁ କରିବାର ଅଛି, ଏତେ ଖଣ୍ଡା, ଢାଲର ଆୟୋଜନ କାହିଁକି ? ଆପଣ ଅଫିସିଆଲ ପ୍ରୋସେସ୍‌ର ପାରାଚ୍ୟୁଟ ଧରି ଉଡ଼ାଜାହାଜରୁ ପୃଥିବୀକୁ ଖସୁଛନ୍ତି; ଅଥଚ ମୁଁ ଉଡ଼ାଜାହାଜରୁ ଏମିତି ହିଁ ଡେଇଁପଡ଼ିବାରେ ଅଭ୍ୟସ୍ତ ।

ସେ କିଛି କହିବାର ଉପକ୍ରମ କରି ହାତ ହଲାଇଲେ । ମୁଁ ତାଙ୍କୁ ସୁଯୋଗ ନଦେଇ, ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲି : ଭଦ୍ରଲୋକ, ମୁଁ ଆଜି ଏଇଠି ଗୃହଣ କରୁନ । ଆପଣ କଣ ଭାବୁଛନ୍ତି ଭାବରେ ଆଜିଠାରୁ ରାସ୍ତାରେ ଚଳପ୍ରଚଳ କରିପାରିବେ ? ପାରିବେ ଯଦି କରନ୍ତୁ ।

ତାଙ୍କ ଟେବୁଲ ଉପରେ ଖାତା ଓ ଚିଠିଟିକୁ ଥୋଇଦେଇ ମୁଁ ତାଙ୍କ କକ୍ଷରୁ ବାହାରି ଆସିଲି ।

ବାହାରେ ଜଣେ ବନ୍ଧୁ ପଚାରିଲା : କଣ ହେଲା ?

ମୁଁ କହିଲି : ବାଜେ । ଯାହା ଜଣାଯାଉଛି, ବୁଢ଼ାକୁ କିଏ ଉସ୍‌କାଉଛି । ସାହସ ଦଉଛି । ହଉ ।

ବନ୍ଧୁଟି କହିଲା : ଇଏ କୁକୁର ଥିଲେ । ଏବେ ପାଗଳ ହୋଇ-ଗଲେଣି ।

*  *  *  *

ଉପସ୍ଥାନ ଖାତାରୁ ମୁଁ ମୋ ଦସ୍ତଖତ **କାଟିଦେଲି** । ଗୋଟେ ଛୁଟି ଦରଖାସ୍ତ ପିଅନ ହାତକୁ ବଢ଼ାଇ ଦେଇ ଅଫିସରୁ ବାହାରିଗଲି ।

ସନ୍ଧ୍ୟାରେ ଶୁଣିଲି, ଆମ କର୍ମଚାରୀ ୟୁନିଅନର ନେତା ଶ୍ରୀ ମିଶ୍ରଙ୍କୁ କହୁଥିଲେ : ଆପଣ ଚୁପ୍‌ଚାପ୍ ରୁହନ୍ତୁ । ମୁଁ ଦେଖୁଛି ସିଏ କଣ କରିପାରିବ ।

କୁକୁରଟି ମୋ ଦେହରେ ଲାଗିଗଲା ଭଳି ପାଖେଇ ଯାଇଥିଲା । ଆଗରେ କିଛି ଦୂରରେ ଉତ୍ସବ ଚାଲିଥିଲା । ଗୋଡ଼ଠାରୁ ମସ୍ତିଷ୍କ ଯାଏଁ ମୋର ସ୍ନାୟୁବିକ ପ୍ରକ୍ରିୟା ସମ୍ଭବତଃ ଆଉ ଚାଲୁ ନଥିଲା । ଖାଇବାକୁ ନପାଇ ମଧ୍ୟ ବଞ୍ଚିବାରେ ଅଭ୍ୟସ୍ତ ହୋଇ ପଡ଼ିଥିବା ଲୋକଙ୍କପରି ମୋ ପାଦ ଦୁଇଟି ଗତିଶୀଳ ଥିଲେ । ମୁଁ ଆଶା କରୁଥିଲି, ନିଶ୍ଚୟ ମୁଁ କୁକୁର କବଳରୁ ମୁକ୍ତିପାଇବି । ଉତ୍ସବ ଚାଲିଥିବା ଜାଗାରେ ମୁଁ ପହଞ୍ଚିଗଲି ।

ଉତ୍ସବ ମାନେ; ଗୋଟେ ବାଦ୍ୟପାଲି ଚାଲିଥାଏ । ଲୋକମାନେ ଘେରି ବସିଥା'ନ୍ତି ଓ ଠିଆହୋଇ ଥାଆନ୍ତି ରାସ୍ତା ଉପରେ । ସନ୍ଧ୍ୟା ବଢିଯିବା ପରେ ଏଇ ରାସ୍ତାରେ ଆଉ ଯାନବାହନ ଚଳାଚଳ ହୁଏନାହିଁ । ତେଣୁ ରାସ୍ତା ଉପରେ ବାଦ୍ୟପାଲି କରାଇବାରେ କିଛି ଅସୁବିଧା ନଥିଲା ।

ମୁଁ ଲୋକମାନଙ୍କଠାରୁ ପ୍ରାୟ ଦଶଫୁଟ ଦୂରରେ ପହଞ୍ଚିଗଲି । ସେତେବେଳେ ଭିଡ଼କୁ ଦୁ'ଭାଗ କରି ମୋ ସାମନାପଟୁ ମୋର ଜଣେ ସହକର୍ମୀ ଆସୁଥିଲେ ।

ମୋର ଏଇ ସହକର୍ମୀ ଜଣକ ଟିକିଏ ଫାଇଦାଖୋର ଓ ଚତୁର । କାହାକୁ ପଛପଟୁ ଧକ୍କା ମାରି ତାକୁ ପୁଣି ସାମନାପଟୁ ପଡ଼ିଯାଉଥିବା ଅବସ୍ଥାରେ ଧରିବା ବାଗରେ ଏହାଙ୍କର ବିକଳ୍ପ ନାହିଁ । ତାଙ୍କ ସ୍କୁଟର ମତେ ଗୋଡ଼ାଉଥିବା; କୁକୁରକୁ ତା ସାମନାପଟୁ ଧକ୍କା ଦେଲି । କୁକୁରଟି ଛିଟ୍‌କିଯାଇ କିଛି ଦୂରରେ ପଡ଼ିଲା । ମୁଁ ଠିଆ ହୋଇଗଲି । ମୋର ସହକର୍ମୀ ଜଣକ ନିର୍ବିକାରଭାବେ ଚାଲିଯାଉଥିଲେ । ମୁଁ ଭାବିଲି, ଏବେ କୁକୁରଟି ଯଦି ଉଠିପାରେ; ତେବେ କ୍ରୋଧରେ ତାଙ୍କ ପଛରେ ହିଁ ଗୋଡ଼ାଇବ ।

କିନ୍ତୁ, ନା । କୁକୁରମାନେ ଚିରକାଳ କୁକୁର । ସେଥିରେ ପୁଣି ଏଇଟି ତ ପାଗଳ ହୋଇଯାଇଛି । ଉଠିପଡ଼ି ମୋ ଆଡ଼କୁ ହିଁ ମାଡ଼ିଆସିଲା । ଆଉ ଉପାୟ ନଦେଖି ମୁଁ ମୋର ଡାହାଣପଟେ ଥିବା ଗୋଟେ ଘରର ଉଚ୍ଚା ବାରଣ୍ଡା ଉପରକୁ ଚଢ଼ିଗଲି । କୁକୁରଟି ବାରଣ୍ଡା ତଳକୁ ଆସିଲା । ଉପରକୁ ଉଠିବାର ଉପକ୍ରମ କରି ବାରମ୍ବାର ବିଫଳ ହେଉଥିଲା ।

ମୋର ଗୋଡ଼ ଦୁଇଟି ଛିଣ୍ଡି ପଡ଼ିବା ପରି ଲାଗୁଥିଲା । କ୍ଲାନ୍ତିରେ ମୋର ସ୍ନାୟୁବିକ ପ୍ରକ୍ରିୟା ଅବଶ ହୋଇ ପଡ଼ୁଥିଲା । ଘନ ଘନ ମୋର ଆଖି ବନ୍ଦ ହୋଇ ଆସୁଥିଲା । ପରମ ସୁଖରେ ଚଟାଣ ଉପରେ ଗଡ଼ି ପଡ଼ିବା ପାଇଁ ଇଚ୍ଛା କରି ମୁଁ କ୍ଷାନ୍ତ ହେଉଥିଲି । କାରଣ ମୋର ଆଶଙ୍କା ହେଉଥିଲା, ଯେକୌଣସି ମୁହୂର୍ତ୍ତରେ ମତେ ନିଦ ହୋଇପାଇପାରେ ଓ କୁକୁରଟି ମଧ୍ୟ ଯେକୌଣସି ମୁହୂର୍ତ୍ତରେ ବାରଣ୍ଡା ଉପରକୁ ଉଠି ଆସି-

ବାରେ ସଫଳ ହୋଇଯାଇ ପାରେ । ତେଣୁ ମାଡ଼ପଡ଼ୁଥିବା ମୋର ଆଖିପତାକୁ ଟେକିଧରି, ପାଲା ହେଉଥିବା ଜାଗାର ଆଲୋକମାଳାରୁ ଛିଟିକି ଆସୁଥିବା ସନ୍ତକଞ୍ଚିତ ଆଲୁଅରେ ମୁଁ କୁକୁରଟିର ପ୍ରୟାସକୁ ଲକ୍ଷ୍ୟ କରୁଥିଲି । ମୋ ଦୃଷ୍ଟିରେ ଧୀରେ ଧୀରେ କୁକୁରଟିର କାୟା ବଢ଼ି ଚାଲିଥିବା ପରି ଲାଗୁଥିଲା ।

ବାଦ୍ୟପାଲା ଚାଲିଥିଲା । ମତେ ସବୁ ଶୁଭୁଥିଲା । ଝାଞ୍ଜ ଓ ମୃଦଙ୍ଗ ମାଡ଼ସହ ସୁଲଳିତ ସଙ୍ଗୀତ ମତେ ଅଧିକ ଦୁର୍ବଳ କରି ଦେଉଥିଲା । ମୁଁ ଶୋଇ ପଡ଼ୁ ପଡ଼ୁ ଉଠିଯାଉଥିଲି ।

ଅନେକ ସମୟ ବିତିଗଲା ।

ଲୋକମାନେ ପାଲା ଦେଖୁଥିଲେ । କିଛିଲୋକ ଫେରୁଥିଲେ । କିଛି ନୂଆ ଲୋକ ଆସି ଭିଡ଼ରେ ମିଶୁଥିଲେ । ଏତେ ଲୋକ ଯିବା ଆସିବା କରୁଥିବା ସତ୍ତ୍ୱେ, ମୋ ଆଡ଼କୁ କାହାର ଦୃଷ୍ଟି ପଡ଼ୁ ନଥିଲା । ମୁଁ ବି ଯେମିତି ଚାହୁଁଥିଲି, କେହି ମୋ ପାଖକୁ ଆସି ମତେ ଏ ଅନୁଭୂତିରୁ ବଞ୍ଚିତ ନକରୁ । ମତେ ସାହାଯ୍ୟ ନକରୁ ।

ହଠାତ୍ ଘରର କବାଟ ଖୋଲିଲା । କାଦୁଆ ମୁହଁରେ ଗୋଟେ ପନ୍ଦର ଷୋହଳ ବର୍ଷର ପିଲା ଆସି ବାରଣ୍ଡାରେ ଠିଆହେଲା । ସେ ବୋଧେ ମତେ ଦେଖିପାରି ନଥିଲା । ତାର ବୋଧହୁଏ ପାଲା ଦେଖିବାକୁ ଯିବାର ଇଚ୍ଛାଥିଲା । ସେ ବାରଣ୍ଡା ତଳକୁ ଓହ୍ଲାଇବା ପରେ ମତେ ଦେଖିଲା । ମୁଁ ପାଟିକଲି : ଓହ୍ଲାଅନି, ଓହ୍ଲାଅନି । ତଳେ ଗୋଟେ ପାଗଳା କୁକୁର ଅଛି । କାମୁଡ଼ି ଦେଇପାରେ । ମୃତ୍ୟୁ ନହେଲେ ବି, ଚଉଦଟା ଇଞ୍ଜେକସନ୍ ତ ନେବାକୁ ପଡ଼ିବ ।

ସେ ଘର ଭିତରକୁ ଗଲା ଓ ଗୋଟେ ଠେଙ୍ଗାଧରି ଫେରିଲା । ତା' ପଛେ ପଛେ ଯିଏ ଆସିଲେ, ସେ ଆମ କର୍ମକୃତ୍ୟ ସଂଘର ସ୍ୱାମୀଜୀ ନେତା ।

ଏଇ ନେତାଙ୍କୁ ଅନେକଦିନ ତଳୁ ମୁଁ ନମସ୍କାର କରିବା ଛାଡ଼ିଦେଇଛି । ତାଙ୍କୁ ଧର୍ମ୍ମକ ଦେଖାଉ ନଥିବା ଲୋକଙ୍କୁ ବିପଦରେ

ପକାଇ ପୁଣି ବିପଦରୁ ଉଦ୍ଧାର କରିବା ବିଗରେ ସ୍ୱାମୀଙ୍କର ଖୁବ୍ ନାଁ ଡାକ ଅଛି । ଏକପ୍ରକାର ଇଏ ସାପ ହୋଇ ଦଂଶନ୍ତି ଓ ଗୁଣିଆ ହୋଇ ଝାଡ଼ନ୍ତି ବୋଲି ପ୍ରବାଦ ଅଛି । ତାଙ୍କୁ ଅବମାନନା କରୁଥିବା ଲୋକ ସେ କେବେ ଠିକ୍ ବାଟରେ ଚାଲିପାରେ ଓ ଠିକ୍ କାମ କରିଥାଇପାରେ—ଏକଥା ସେ ବିଶ୍ୱାସ କରନ୍ତି ନାହିଁ ।

ସେ ମତେ ଦେଖିଲେ । ଠେଙ୍ଗାଧରି ଆସିଥିବା ତାଙ୍କ ପୁଅ ଉଦ୍ଦେଶ୍ୟରେ ଗର୍ଜନ କଲେ : ସ୍ୱାମୀଙ୍କୁ ଏ ବାରଣ୍ଡା ଉପରକୁ ଡାକିବାକୁ ତତେ କିଏ କହିଲା ?

ଅଗତ୍ୟା ମୁଁ କହିଲି : ସେ ମତେ ଡାକିନାହାଁନ୍ତି । ଆପଣଙ୍କ ପୁଅ କଣ ଏତେ କଥା ଜାଣିଥିବ ? ମୁଁ ନିଜେ ହିଁ ଉଠିଆସିଛି; ଅବଶ୍ୟ ଏଇଟା ଆପଣଙ୍କ ଘର ବୋଲି ଜାଣିଥିଲେ ମୁଁ କଦାପି ଏଇ ବାରଣ୍ଡା ଉପରକୁ ଆସିନଥାନ୍ତି । ମୋର ଏବେ ନିଜକୁ ଧିକ୍କାର କରିବାକୁ ଇଚ୍ଛା ହେଉଛି । ନିଜପ୍ରତି ଘୃଣା ହେଲାଣି ।

କହିସାରି ମୁଁ ବାରଣ୍ଡା ଉପରୁ ଗୋଟିଏ ଡିଆଁରେ ଆସି କୁକୁର ସାମନାରେ ଠିଆହେଲି ଓ ଆମ ନେତାଙ୍କୁ ଆହ୍ୱାନ କଲି : ଚାହିଁଲେ ଆପଣ ଏ ବିଚରା ପାଗଳା କୁକୁରଟିକୁ ସାହାଯ୍ୟ କରିପାରନ୍ତି ।

ସେ ଚାଟିରେ ଶବ୍ଦ କଲେ : ତୁ···ତୁ···ତୁ···ତୁ···ତୁ ।

ଅଦ୍ଭୁତ କଥା, କୁକୁରଟି ଲାଙ୍ଗୁଡ଼ ହଲାଇଲା । ଲାଙ୍ଗୁଡ଼ ସହିତ ତାର ସମ୍ପୂର୍ଣ୍ଣ ଅବୟବ ହଲଚଲ ହୋଇଯାଉଥିଲା ।

ତଥାପି ମୁଁ ତର୍ଜନୀ ଛଡ଼ିକା ମୁଦ୍ରାରେ କୁକୁରଟି ଆଡ଼କୁ ମୋର ଦୁଇହାତ ବଢ଼ାଇଲି । ପାଗଳା କୁକୁରଟି ଅଦ୍ଭୁତ ସନ୍ଦେହରେ ବାରଣ୍ଡା ଉପରେ ଠିଆ ହୋଇଥିବା ନେତାଙ୍କ ଆଡ଼କୁ ଓ ନିର୍ବାକ ବିସ୍ମୟରେ ତା' ଦେହ ଆଡ଼କୁ ଲମ୍ବିଯାଉଥିବା ମୋର ହାତ ଦୁଇଟିକୁ ଚାହୁଁଥିଲା ।

ମୁଁ ସମ୍ବାଦ ସୃଷ୍ଟି କରିବାକୁ ଗ୍ଭହିଁଲି ନାହିଁ । ତେଣୁ ମୋର ସ୍ୱାଂସ୍ର ହାତ ଦୁଇଟିକୁ ଫେରାଇଆଣି, ବାରଣ୍ଡା ତଳେ କୁକୁରଟିର ସାମନାରେ ପରିସ୍ରା କରି ଫେରିଆସିବା ପୂର୍ବରୁ ଆମ ନେତାଙ୍କ ଉଦ୍ଦେଶ୍ୟରେ କହିଲି : ଭପୂରେ ମୂତ ପକାଇଲି ଆଜ୍ଞା !

# ଢାଙ୍କୁଣୀ

ତମେ ସେଇ ପିଲାଟିର କଥା ଶୁଣିଛ, ଯିଏ ଗୋଟେ ଡ୍ରେନ୍ ଭିତରେ ପଡ଼ିଯାଇ କେଉଁଆଡ଼େ ଉଭାନ୍ ହୋଇଗଲା ? ଶୁଣି ନାହଁ, ନା ? ଓଃ, ତମେ ସେତେବେଳେ ବିଦେଶ ଟୁରରେ ଯାଇଥିଲ ପରା ! ତେବେ ମୋଠାରୁ ଶୁଣ ।

ଜାଣିଛ ତ, ଆମର ଏଠି ଡ୍ରେନ୍ ଗୁଡ଼ାକର ଢାଙ୍କୁଣୀ ପ୍ରାୟ ନଥାଏ । ଯେତେ ଥର ନୂଆ ଢାଙ୍କୁଣୀ ଆଣି ଡ୍ରେନ୍‌ର ମୁହଁ ଢଙ୍କାଯାଏ, ସେତେଥର ଚୋରି ହୁଏ । ଏବେ ତ ଅସାମାଜିକ ଲୋକମାନଙ୍କର ସଂଖ୍ୟା ଓ ସେମାନଙ୍କର ଶକ୍ତି ଏତେ ବଢ଼ିଗଲାଣି ଯେ ଯାହାକୁ ନିଜ ଜୀବନ ପିତା ଲାଗିନାହିଁ ସେ ସେଇମାନଙ୍କର କାର୍ଯ୍ୟକଳାପ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ତ ଦୂରର କଥା; ଦେଖି ସୁଦ୍ଧା ନ ଦେଖିଲାଭଳି ଚାଲିଯାଉଛନ୍ତି । ତା' ନହେଲେ, ମାସେ ତଳେ ରାତିର ବିଳମ୍ବିତ ପ୍ରହରରେ ସେ ଡ୍ରେନ୍‌ର ଢାଙ୍କୁଣୀଟିକୁ ଜଣେ କେହି ଉଠାଇ ନେଉଥିବାବେଳେ ସେଠାକାର ଜଣେ ଭଦ୍ରଲୋକ କଣ ଦେଖି ନଥିଲେ କି ? ଆରେ, ସେ ଭଦ୍ରଲୋକଙ୍କ କଥା କଣ ଶୁଣିବ ? ଏବେ ଦଶଦିନ ତଳେ ପରା ଅଧରାତି ବେଳକୁ ତାଙ୍କ ନିଜ ଘରର ଝରକା ପାଖରେ ଡୁଙ୍ଗୁଥିବା ଗୋଟେ ଚୋରକୁ ଦେଖି ସେ 'ଚୋର' ବୋଲି ଥରେ ମାତ୍ର ଚିତ୍କାର କରିଛନ୍ତି, ଚୋର ଯେମିତି କହିଲା : ଆବେ, ଚୋପ୍ ଶଳା ! ମିଛଟାରେ କାହିଁକି ରଡ଼ିପାଡ଼ି କରୁଛୁ; ସେ ଚୁପ୍ ହୋଇଗଲେ ଓ ଚୋରଟା ଚାଲିଯିବା ପରେ

ଝରକା ବନ୍ଦ କରିଦେଲେ । ପ୍ରେରେ ଯାଇ ଅନ୍ୟଜଣକ ଘରେ ରେଣ୍ଟ କଲୁ ଓ ସବୁକଥା ସକାଳୁ ଜଣାପଡ଼ିଲା ।

ଏଇ ତ ମାସ ଛଅଦିନ ତଳେ ଦୁଇ ଅଢ଼େଇ ବର୍ଷର ପିଲାଟିଏ ସେଇ ଢାଙ୍କୁଣୀ ନଥିବା ଡ୍ରେନ୍ ଭିତରକୁ ଖସିପଡ଼ିଲା । କୁଆଡ଼େ ତ ଚାଲିଗଲା କିଛି ଜଣାପଡ଼ିଲା ନାହିଁ । ସେଦିନ ଟିପି ଟିପି ବର୍ଷା ହେଉ କିଛି ସମୟ ପୂର୍ବରୁ ଛାଡ଼ି ଯାଇଥିଲା । ବାପା' ମାଙ୍କର ଅସତର୍କତାର ସୁଯୋଗ ନେଇ ପିଲାଟି ରାସ୍ତା ଉପରକୁ ଚାଲିଆସିଲା । ସନ୍ଧ୍ୟା ସମୟ । ରାସ୍ତା କଡ଼ରେ ବଡ଼ପାଟି ଆଁ ମେଲି ରହିଥିବା ଡ୍ରେନ୍ । 'କୁଆଡ଼େ ଗଲୁ, କୁଆଡ଼େ ଗଲୁ' ବୋଲି ମା', ବାପା ଦୁହେଁ ବାହାରକୁ ଆସିଲାବେଳକୁ ସେ ଡ୍ରେନ୍ ଭିତରକୁ ଗଳି ପଡ଼ିଲାଣି । ଡ୍ରେନ୍‌ରେ ଖଳଖାଳ ଶବ୍ଦ କରି ପାଣି ଯାଉଛି । ବାପଟି ଏକା ଖେପାକେ ଯାଇ ଡ୍ରେନ୍ ପାଖରେ ହାଜର ହେଲା । ପେଟେଇ ପଡ଼ି ଡ୍ରେନ୍ ଭିତରକୁ ଦେଖିଲା । କିଛି ଦେଖାଗଲା ନାହିଁ । ପିଲାର କାନ୍ଦ କି ରଡ଼ି କିଛି ଶୁଭୁନି । କେବଳ ବହି ଯାଉଥିବା ପାଣିର ନିଷ୍କରୁଣ, ହିଂସ୍ର ଶବ୍ଦ । ଲୋକଟି ପେଟେଇ ପଡ଼ି ଡ୍ରେନ୍ ଭିତରକୁ ହାତ ବଢ଼ାଉଛି । ଅଣ୍ଡାଳି ପକାଉଛି । କେବଳ ପାଣି । ଭିତରଟା କେତେ ଖାଲ ହୋଇଛି ସେ ଜାଣିପାରୁନାହିଁ । ତଥାପି ଗୋଡ଼ ବଢ଼ାଇ ଭିତରକୁ ଗଳିବାକୁ ଚେଷ୍ଟା କରୁଛି । ଗୋଡ଼ ଦୁଇଟିକୁ କାତି ଭଳି ଘନ ଘନ ଘୂରାଉଛି ପାଣି ଭିତରେ । ଭିତରଟାକୁ ମନ୍ଥି ପକାଉଛି । ସାମୟିକ ଭାବେ ବାଧା ପାଇଲେ ବି ଡ୍ରେନ୍‌ର ଗୋଟିଏ ପଟରୁ ଆସୁଥିବା ପାଣି ଭିତରେ ଭିତରେ ଅନ୍ୟପଟକୁ ବହିଯାଉଛି । ଲୋକଟି ଚିତ୍କାର କରୁଛି : ବାପୁ ବାପୁ···! ଆରେ ମୋ ଅନ୍ଧର ଲଉଡ଼ି ! କୁଆଡ଼େ ଗଲୁ ?

ଶେଷକୁ ଖାଲି ଶୁଭୁଛି ଭେଁ ଭେଁ ଶବ୍ଦ । ଲୋକ ଜମା ହେଉଛନ୍ତି । ଅନେକ କଥା ପଚାରୁଛନ୍ତି । ସେ କିଛି ବି କହିପାରୁନାହିଁ । ଝର ଝର କାନ୍ଦୁଛି ।

ଲୋକଟି ପ୍ରତି ସମବେଦନା ଜଣାଇ ତା' ପରଦିନ ଅବଶ୍ୟ ଦୁଇଟି ଶୋଭାଯାତ୍ରା ବାହାରିଥିଲା । ଗୋଟିଏ ଶିଶୁମାନଙ୍କର ଓ ଅନ୍ୟଟି ନାରୀମାନଙ୍କର । ଶିଶୁମାନଙ୍କର ସ୍ଲୋଗାନ ଥିଲା : ଦେଶର ଭବିଷ୍ୟତ-

ମାନଙ୍କୁ ନିରାପତ୍ତା ଯୋଗାଇଦିଅ । ବାପୁମାନଙ୍କୁ ଆତତାୟୀ ଟ୍ରେନ୍ ମୁହଁରୁ ଉଦ୍ଧାର କର । ନାରୀମାନେ ସ୍ଲୋଗାନ ଦେଲେ : ଟ୍ରେନ୍‌ରେ ଚାଙ୍କୁଣୀ ଦିଅ । ଚାଙ୍କୁଣୀକୁ ମଜ୍‌ବୁତ୍ କର । ଚୋରକୁ ଜବତ୍ କର । କିମ୍ବା ଆମକୁ ବନ୍ଧ୍ୟା କରିଦିଅ ।

ପୁରୁଷମାନଙ୍କର ଶୋଭାଯାତ୍ରା ବାହାରିନି । ଏଯାଏଁ ବାହାରି ପାରିନି । ଆଉ ବୋଧେ ବାହାରିବା ଦରକାର ପଡ଼ିବ ନାହିଁ । କାରଣ ସେଦିନ ସେମାନେ ଏକଜୁଟ ହୋଇ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଓ ମୁଖ୍ୟମନ୍ତ୍ରୀଙ୍କୁ ଯାଇ ଭେଟିଥିଲେ । ତେବେ ମ୍ୟୁନିସିପାଲିଟି କାର୍ଯ୍ୟାଳୟ-ଠାରେ ଅଦ୍ଭୁତ କାଣ୍ଡ ସୃଷ୍ଟି ହେଲା । ଚେୟାରମ୍ୟାନ୍ ଉତ୍ତ୍ୟକ୍ତ ହୋଇ କୁଆଡ଼େ କହିଲେ, ଡ୍ରେନ୍‌ରେ ଚାଙ୍କୁଣୀ ଅବଶ୍ୟ ଲଗାଯାଇଥିଲା । କିନ୍ତୁ ଚୋର ଜଗିବା ମ୍ୟୁନିସିପାଲିଟିର କାମ ନୁହେଁ । ପ୍ରତି ଡ୍ରେନ୍ ପାଖରେ ଜଣେ ଲେଖାଏଁ କନେଷ୍ଟବଲ ମୁତୟନ କରିବା ବି ସମ୍ଭବ ନୁହେଁ । ନାଗରିକମାନେ ନିଜ ଦାୟିତ୍ୱ ନିଜେ ନେବା ଶିଖନ୍ତୁ । କାରଣ ଜୀବନ ଧାରଣ କରିବା ଏବେ ଆଉ ପୂର୍ବ ଭଳି ଏତେ ସହଜ କଥା ହୋଇ ରହିନାହିଁ । ରାସ୍ତା ଉପରୁ ଝିଅଙ୍କୁ ଉଠାଇ ନିଆଯାଉଛି । ପିଲା ଚୋର-ମାନେ ପିଲାଙ୍କୁ ଫୁଲ ଶୁଂଘାଇ, ଅଖାରେ ପୁରାଇ ନେଇଯାଉଛନ୍ତି, ଚିକିତ୍ସାରେ ଅବହେଳା କରାଯାଇ ରୋଗୀଙ୍କୁ ଜାଣିଶୁଣି ମାରି ଦିଆଯାଉଛି ଓ ତା'ର କିଡ୍‌ନି, ହାର୍ଟ, ଆଖି, ହାଡ଼ ଭିତରର ଶସ, ଅଣ୍ଡକୋଷ ଇତ୍ୟାଦି ପ୍ରଚୁର ଅର୍ଥ ବିନିମୟରେ ରପ୍ତାନି କରାଯାଉଛି । ତେଣୁ ନିଜେ ହିଁ ନିଜକୁ ବଞ୍ଚାଅ । ରାସ୍ତା ଉପରେ ଚଳନ୍ତା ଗାଡ଼ି ମୋଟରଠୁ ପିଲା-ମାନଙ୍କୁ ତମେ ଯେମିତି ଦୂରେଇ ରଖ, ଡ୍ରେନ୍‌ଠୁ ବି ସେହିପରି ଦୂରେଇ ରଖିବାକୁ ଚେଷ୍ଟା କର ।

ତାହା ଶୁଣି ଉତ୍ତ୍ୟକ୍ତ ଜନତା ମ୍ୟୁନିସିପାଲିଟିଠାରେ ବହୁତ କିଛି ଭଙ୍ଗାରୁଜା କଲେ । ଫାଇଲପତ୍ର ଛିନ୍ନଛତ୍ର କରିଦେଲେ । ତା'ପରେ ସେମାନେ ଚାଲିଲେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ । ସେଠାରେ ସେମାନେ କ'ଣ କରିଥିବେ କହିଲ ଦେଖି ? ହଁ, ଠିକ୍ କହିଲ, ମୁଖ୍ୟମନ୍ତ୍ରୀଙ୍କୁ ସେମାନେ ସ୍ମାରକପତ୍ର ଦେଲେ । ସେମାନେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିବା

ପୂର୍ବରୁ ଅବଶ୍ୟ ମୁଖ୍ୟମନ୍ତ୍ରୀ ମହାଶୟ ସେମାନେ ମ୍ୟୁନିସିପାଲିଟି କାର୍ଯ୍ୟାଳୟରେ ଉଠାଇଥିବା କାଣ୍ଡ କାରଖାନା ବିଷୟରେ ଅବଗତ ହୋଇସାରିଥିଲେ ଓ ଶତାଧିକ ପୋଲିସ୍ ଘେରରେ ହସହସ ଓଠରେ ଆଲୋଚନାରତ ଥିଲେ । କେବଳ ତାଙ୍କ ପାଟିଟିକୁ ବାଦ୍ ଦେଇ ଶରୀରର ଅନ୍ୟ ସମସ୍ତ ଅଂଶ ବୁଲେଟ୍ ପ୍ରୁଫ୍ ଜାକେଟ୍, ହେଲମେଟ୍, ସାଞ୍ଜୁ, ଲୁହା ଓ ଇସ୍ପାତର ପାତ ଆଦି ଯାବତୀୟ 'ଢାଙ୍କୁଣୀ' ଦ୍ୱାରା ଆବୃତ ଥିଲା । ସେ କିଛି ଦେଖିପାରୁ ନଥିଲେ । ହୁଏତ କିଛି କିଛି ଶୁଣି ପାରୁଥିଲେ । କିନ୍ତୁ ଶୁଣିବାକୁ ଇଚ୍ଛୁକ ଥିବାଭଳି ଜଣା ପଡ଼ୁନଥିଲେ । ସେ ଜନତାଙ୍କୁ ସମ୍ବୋଧନ କରି କହିଲେ : ହେ ମୋର ମହାନ୍ ପରମ୍ପରା-ମଣ୍ଡିତ ଦେଶର ପାରମ୍ପରିକ ସହଯାତ୍ରୀ ଭାଇମାନେ ! ମୁଁ ସବୁକଥା ଶୁଣିଛି । ବାପୁ ଭଳି ତେଜୋଦୀପ୍ତ ଭବିଷ୍ୟତର ବାହକ ଏପରି ଭାବେ ଅବେଳରେ ଚାଲିଯିବା ଘଟଣାରେ ମୁଁ ଅତ୍ୟନ୍ତ ମର୍ମାହତ । ଆପଣମାନେ ଶାନ୍ତ ହୁଅନ୍ତୁ । ଧ୍ୱଂସାତ୍ମକ ପନ୍ଥାରୁ କ୍ଷାନ୍ତ ହୁଅନ୍ତୁ । ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରନ୍ତୁ । ମୁଁ ସ୍ମାରକପତ୍ରଟିକୁ ଅବଶ୍ୟ ଆମୂଳଚୂଳ ପାଠ କରିବି ଓ ତୁରନ୍ତ ଆପଣମାନଙ୍କ ସମସ୍ୟାର ଉପଯୁକ୍ତ ପ୍ରତିବିଧାନ କରିବି ।

ଏଁ, କ'ଣ କହିଲ ? ମୁଖ୍ୟମନ୍ତ୍ରୀ କିଛି କଲେ କି ନାହିଁ, ପଚାରୁଛ ? ହଁ କଲେ, କଲେ । ତା' ପରଦିନ ହିଁ ସମସ୍ତ ମନ୍ତ୍ରୀ ଓ ବିଧାୟକମାନଙ୍କୁ ରାଜଧାନୀ ଛାଡ଼ି ନିଜ ନିଜ ନିର୍ବାଚନ ମଣ୍ଡଳୀକୁ ଚାଲିଯିବା ପାଇଁ ଆଦେଶ ଦେଲେ । ସ୍ୱ ସ୍ୱ ନିର୍ବାଚନ ମଣ୍ଡଳୀର ସହରାଞ୍ଚଳରେ ଛଦ୍ମବେଶରେ ବୁଲି ଡ୍ରେନ୍‌ର ଢାଙ୍କୁଣୀ ଚୋରି କରୁଥିବା ଲୋକଙ୍କୁ ରେଡ୍ ହ୍ୟାଣ୍ଡେଡ୍ ଧରିବା ପାଇଁ ସେମାନଙ୍କୁ ସେ ନିର୍ଦ୍ଦେଶ ଦେଇଛନ୍ତି । ଆଦେଶ ମାନି ସମସ୍ତେ ରାଜଧାନୀ ଛାଡ଼ି ଚାଲିଗଲେଣି ଓ ନିଜ ନିଜ ଇଲାକାରେ ପୂର୍ବକାଳର ରାଜାମହାରାଜାଙ୍କ ଷ୍ଟାଇଲରେ ଅଭିସାର ବଜେ ଆରମ୍ଭ କରିଦେଲେଣି । ସୁଫଳ ମିଳିବ ବୋଲି ଆଶା କରାଯାଉଛି ।



# ଗାନ୍ଧିଜୀଙ୍କୁ କହିଦେବେ

ବନ୍ଧୁ ବିରୂପାକ୍ଷଙ୍କ ବିରୁଦ୍ଧରେ ମୋର ଅବଶ୍ୟ କିଛି କହିବାର ନାହିଁ । ବରଂ ଏ ପ୍ରସଙ୍ଗରେ ମୋର ଏଯ଼ା କହିବା ଅଧିକ ସମୀଚୀନ ହେବ ଯେ ; ଗୋଟିଏ ନିର୍ଦ୍ଦିଷ୍ଟ ପରିବେଶ ମଧ୍ୟରେ ଆତଯାତ ହେଉଥିବା ମଣିଷ, ସେଇ ପରିବେଶରେ ଆଦୃତ ହୋଇନପାରିବା ଭଳି ଆଶଙ୍କା ଥିବା ପଦକ୍ଷେପ ସହଜରେ ଗ୍ରହଣ କରିପାରେ ନାହିଁ ।

ମୁଁ ସେତେବେଳେ ଚରଣ୍ଡିରେ ଥାଏ । ବଲାଙ୍ଗିରର ଚରଣ୍ଡିରେ । ଚରଣ୍ଡି : ଯାହା ଓଲଟା ଘରତ ନାଁରେ ଖ୍ୟାତ ।

ଆମ ବ୍ୟାଙ୍କରେ ଗୋଟେ ସୁଇପର ପିଲା ଥିଲା । ରବିନ୍ । ଜାତିରେ ଘାସି । ଏଇ ଘାସିମାନଙ୍କୁ ଅନ୍ୟ ଅଞ୍ଚଳମାନଙ୍କରେ କି ଜାତିର ଲୋକ ବୋଲି କୁହାଯାଏ ମୁଁ ଜାଣେନା । ତେବେ ରବିନ୍ ଆମ ବ୍ୟାଙ୍କ ଘର ଓ ପରିସର ଝାଡ଼ୁ କରୁଥିଲା ଏବଂ ପାଇଖାନା ସଫା କରୁଥିଲା । ଆଠଘଣ୍ଟା ବ୍ୟାଙ୍କରେ ରହିବାକୁ ପଡ଼ୁଥିବାରୁ, ତା'ର କାମ ସରିଯିବା ପରେ ବି ବୋଲହାକ କରିବାକୁ, ପାନ ସିଗାରେଟ ଆଣିବାକୁ, ଏମିତି କି ଚା' ଆଣିବା ସହିତ ମଝି ମଝିରେ କର୍ମଚାରୀମାନଙ୍କୁ ପିଇବା ପାଣି ପର୍ଯ୍ୟନ୍ତ ଯୋଗାଇବାକୁ ସେ, ବ୍ୟାଙ୍କ ବନ୍ଦ ହେବା ଯାଏଁ, ବ୍ୟାଙ୍କରେ ରହୁଥିଲା । ଏମିତି ତାକୁ କେହି ମଧ୍ୟ କେବେ ଅଲଗା ବୋଲି ଭାବୁଥିବା କଥା ଜଣାପଡ଼ୁ ନଥିଲା ।

ଦିନେ ରଞ୍ଜନ ବାହାଘର ହେଲା । ନିମନ୍ତ୍ରଣ ପତ୍ର ଛପାଇ ନଥିଲା । ତେବେ ଆମମାନଙ୍କୁ ସେ ନିମନ୍ତ୍ରଣ ଜଣାଇଥିଲା । ବାରମ୍ବାର ଅନୁରୋଧ କରିଥିଲା ତା' ଘରକୁ ଯିବାପାଇଁ । ଉପହାର ଦେବା ଉଦ୍ଦେଶ୍ୟରେ ଆମେ ମଧ୍ୟ କିଛି ଚାନ୍ଦା ସଂଗ୍ରହ କରିଥିଲୁ ।

ରଞ୍ଜନର ବାହାଘର ପଟୁଆର, ମୋ ପାଇଁ ନିଶ୍ଚୟ ଦର୍ଶନୀୟ ଥିଲା । କାରଣ ସେମିତି ପଟୁଆର ମୁଁ ପୂର୍ବରୁ କେବେ କେଉଁଠି ଦେଖିବା ସୁଯୋଗ ପାଇନଥିଲି ।

ବରପିଲା ଧଳା ଧୋତି ଓ ହାଫ୍ ସାର୍ଟ ପିନ୍ଧି, ମୁଣ୍ଡରେ ମଉଡ଼ ବାନ୍ଧି ଗୋଟେ ରିକ୍ସା ଉପରେ ରାଜା ଠାଣିରେ ବସିଥିବ । ସମସ୍ତେ ହେଇଥିବ ଧୂ ଧୂ ଖରାବେଳ । ତା'ର ଆତ୍ମୀୟ ସ୍ୱଜନମାନେ ରିକ୍ସାର ଆଗପଛ ବାଁ ଡାହାଣକୁ ବେଢ଼ିରହି ଚାଲିଥିବେ । ଆଗକୁ ଆଗକୁ । ବେସୁରା ଗୀତ ଗାଉଥିବେ । କିଏ କଣ ଗାଉଛି ଜଣା ପଡ଼ୁନଥିବ । ବୁଝା ପଡ଼ୁନଥିବ । ଆଗପଟୁ ଗୋଟେ ସ୍ୱର ଶୁଭୁଥିବ ତ, ପଛପଟୁ ଅନ୍ୟ କେଉଁ ରାଗିଣୀ । ପ୍ରାୟ ସମସ୍ତେ ମାତାଲ ଅବସ୍ଥାରେ ଥିବେ । ବୁଢ଼ାବୁଢ଼ୀମାନେ ବି ନାଚୁଥିବେ । ଉଛୁଳି ଉଠୁଥିବେ । ନିଶାରେ ଟଳଟଳ ଗୀତ ଗାଇ ନାଚିବା ଚେଷ୍ଟାରେ କିଏ କେତେବେଳେ ପଡ଼ି ଯାଉଥିବ ଓ ଅନ୍ୟ ଜଣେ ତାକୁ ଉଠାଉ ଉଠାଉ ପଚାରୁଥିବ : ତୁଇ ପିଇଛୁ କାଏଁ ରେ ବା ?

ବଡ଼ ଅନ୍ତରଙ୍ଗ ସେ ଦୃଶ୍ୟ । ଅପୂର୍ବ । ଖୁବ୍ ମୌଳିକ ସେ ଦୃଶ୍ୟ । କରୁଣ ଦୃଶ୍ୟ ।

ବାହାଘର ପରଦିନ ହିଁ ଭୋଜି । ରଞ୍ଜନର ବାପା-ମା ଦୁହେଁ ପୁଣି ଥରେ ଦିନ ଏଗାରଟା ବେଳେ ବ୍ୟାଙ୍କକୁ ଆସି ସମସ୍ତଙ୍କୁ କହି-ଯାଇଥିଲେ : ସନ୍ଧ୍ୟାବେଳେ ଆମର ଆଡ଼େ ଆସିବେ ବାବୁମାନେ ।

ସନ୍ଧ୍ୟା ପାଞ୍ଚଟାରେ ଗୋଟିଏ ଦୋକାନରୁ ଉପହାର କିଣିଲା ବେଳେ ବିଳୁପାକ୍ଷ ପଚାରିଲା : କା' ହାତରେ ଫଟେଇବା ?

ସେ ଅବଶ୍ୟ ପ୍ରଶ୍ନଟି ମତେ ପରୁଚ ନଥିଲା । ତଥାପି ମୋର ଆଗ୍ରହ ଥିବାରୁ ମୁଁ କହିଲି : କାହିଁକି, ଆମେ କଣ ଯିବାନି କି ?

ବିରୂପାକ୍ଷ କହିଲା : ଆମର ତ ଯିବାକଥା ନଥିଲା ।

ମୁଁ ସରଳଭାବେ କହିଲି : ସେମାନେ କେତେ ଅନୁରୋଧ କରିଥିଲେ !

: ତାହା ତ ସେମାନଙ୍କ ଦାୟିତ୍ୱ । କିନ୍ତୁ ସେମାନେ କଦାପି ଆଶା କରିନଥିବେ ଯେ, ଆମେ ଯାଇ ତାଙ୍କ ଦୁଆରେ ହାଜର ହେବୁ ! ତା'ଛଡ଼ା କୌଣସି ଭୋଜିକୁ ଯେଉଁ ସମସ୍ତଙ୍କୁ ନିମନ୍ତ୍ରଣ କରାଯାଇଥାଏ, ସେ ସମସ୍ତେ ଯେ ଯାଇ ପହଞ୍ଚିବେ, ଏମିତି ଗୋଟିଏ ବି ଉଦାହରଣ ନାହିଁ ! ବିରୂପାକ୍ଷ କହିଲା ।

ମୁଁ ପ୍ରଶ୍ନକଲି : କିନ୍ତୁ ଆମେ କାହିଁକି ଯିବୁନାହିଁ ?

ବିରୂପାକ୍ଷ ହସିଲା : ଏତିକି ବୁଝିପାରୁ ନାହାନ୍ତି ? ଗଣ୍ଡା, ଘାସିଙ୍କ ଭୋଜିରେ ଯୋଗଦେଲେ, ଏଇଠି ଲୋକ ଆମକୁ କଣ କହିବେ ?

ମୁଁ ଯୁକ୍ତିକଲି : ଆପଣ କେଉଁ ଯୁଗରେ ଅଛନ୍ତି ? କାହିଁ କେତେବର୍ଷ ତଳୁ ଗାନ୍ଧିଜୀ କହି ସାରିଛନ୍ତି ଯେ ମଣିଷ ଭିତରେ ଉଚ୍ଚ ନୀଚ ଜାତିଭେଦ କିଛି ନାହିଁ ।

ବିରୂପାକ୍ଷ କୋମଳ ବ୍ୟଙ୍ଗ କଲା : ସେମିତିକା କଥା ସବୁ କହିଲେ ବୋଲି ତ ତାଙ୍କୁ ମରିବାକୁ ପଡ଼ିଲା । ତା'ଛଡ଼ା ଆମେ ଏଇନା ଗାନ୍ଧିଜୀଙ୍କ ଆତ୍ମାକୁ ଖୁସି କରାଇବା ପାଇଁ ନିଶ୍ଚୟ ରଙ୍ଗୀନର ବାହାଘର ଭୋଜି ଖାଇବାକୁ ଯିବାନାହିଁ ?

ଅତି ନିରୁପାୟ ହୋଇ ମୁଁ କହିଲି : ଭୋଜି ଖାଇବାଟା ଏତେ ଜରୁରୀ ନୁହେଁ । ଅନ୍ତତଃ ଆମେ ସେମାନଙ୍କ ସହ ସାକ୍ଷାତ କରି ଫେରି ଆସି ପାରିବା ।

: ତାହା ତ ଆପଣ କାଲି ବି କରିପାରିବେ । ବିରୂପାକ୍ଷ କହିଲା ।

ଆମର କଥାବାର୍ତ୍ତା କ୍ରମେ ଯୁକ୍ତିତର୍କ ପର୍ଯ୍ୟାୟକୁ ଆସି ସାରିଥିଲା ।

ଉପହାର ବାଣ୍ଟେ ଉପହାର ରହିଲା । ହୁଏତ ଦୋକାନୀ ତାହା ପ୍ୟାକ୍ କରୁଥିଲା । ଆମେ ସବୁ ଆସି ଦୋକାନ ପଛପଟେ ଥିବା ମଧ୍ୟଇଂରାଜୀ ବିଦ୍ୟାଳୟ ପଡ଼ିଆରେ ଗୋଲାକାର ଭାବେ ଠିଆ ହେଇଥିଲୁ ।

କଥାବାର୍ତ୍ତା ବା ଯୁକ୍ତିତର୍କ କେବଳ ବିରୂପାକ୍ଷ ଓ ମୋ ଭିତରେ ଚାଲିଥିଲା । ଅନ୍ୟମାନେ କିଛିହିଁ କହୁ ନଥିଲେ । ହୁଏତ ଉପଭୋଗ କରୁଥିଲେ ।

ମୋର ପ୍ରକୃତରେ ଯୁକ୍ତି କରିବା ଇଚ୍ଛା ନଥିଲା । ଅନେକ ଦିନରୁ ମୋ ମନରେ ଏ ଧାରଣା ଖୁବ୍ ଦୃଢ଼ ଯେ, ଯୁକ୍ତିକର କାହାର ମନୋଭାବକୁ ବଦଳାଇ ଦେଇ ହୁଏ ନାହିଁ । ବରଂ ସେ ସବୁ କଚେରୀ ଅଦାଲତର କଥା, ଯେଉଁଠି ଯୁକ୍ତି ବଳରେ ନିର୍ଦ୍ଦୋଷକୁ ଦୋଷୀ ପ୍ରମାଣିତ କରି ଜେଲ ଭିତରକୁ ଠେଲି ଦିଆଯାଇ ପାରେ । ତଥାପି ମୁଁ କହିଲି : ଭାରତ ସ୍ୱାଧୀନ ହେବାର ବହୁତ ପରେ ଆପଣ ଜନ୍ମ ହେଇଛନ୍ତି । ଆପଣଙ୍କ ମୁହଁରେ ଏ ମାଛାତା ଅମଳର କଥା ଶୋଭା ପାଉନାହିଁ ।

ବିରୂପାକ୍ଷ ଉତ୍ତର ଦେଲା : ଆପଣ ମୋଠୁ ବୟସରେ ବଡ଼ ହେବେ । ଅଥଚ ଆପଣ ଛୋଟ ପିଲାଙ୍କ ଭଳି କଥାବାର୍ତ୍ତା କରୁଛନ୍ତି । ଅବଶ୍ୟ ଆପଣ ଯଦି ଆଦର୍ଶ ଦେଖାଇବାକୁ ଯିବାପାଇଁ ଚାହୁଁଥା'ନ୍ତି ତେବେ ଆମେ ଆପଣଙ୍କ ହାତରେ ହିଁ ଉପହାର ଜିନିଷ ପଠାଇ ଦେବା ।

ଏଥିରେ ଅନ୍ୟମାନେ ହସିଲେ ଓ ମୁଁ ସେମାନଙ୍କ ଆଖି ଉପରେ ଦୃଷ୍ଟି ପକାଇବା ଦେଖାରୁ ସ ଚତନ ହେଲେ । ସେମାନଙ୍କ ହସ ଅସମାପ୍ତ ରହିଲା ।

ମୁଁ ଶବ୍ଦ ଉପରେ ଓଜନ ଦେଇ କହିଲି : ଆଦର୍ଶ ଶବ୍ଦଟି ପ୍ରତି ମୋର ପ୍ରଚଣ୍ଡ ଘୃଣା । ଯଦିବା ଆଦର୍ଶ ଗୋଟେ ଦେଖାଇବା ଭଳି ଜିନିଷ, ମୋର ହୃଦ୍‌ବୋଧ ହୁଏ, ତାହା ଦେଖାଇବା ସ୍ତରକୁ ମୁଁ ଯାଇପାରିବି ନାହିଁ । ମୁଁ ପଚାରି ପାରେ କି, ରଞ୍ଜନ ଯଦି ଆମର ମ୍ୟାନେଜର ହୋଇଥାନ୍ତା, ତେବେ ଆପଣ ଯାଇଥା'ନ୍ତେ କି ନାହିଁ ?

ବିରୂପାକ୍ଷ କହିଲା : ହାତ୍ତ ! ପୁଣି ସେଇ ପିଲାଳିଆ କଥା କହିଲେ । କଣ ହୋଇଥିଲେ କଣ ହୋଇଥାନ୍ତା, ତାହା ଆଲୋଚନାକୁ ଆସିବାଟା ନିହାତି ଅବାନ୍ତର ।

ଅସଲରେ ଯୁକ୍ତି କରିବାକୁ ମୁଁ ଚାହୁଁନଥିଲି । ତେଣୁ ସାଲିସ୍ କଲି : ଛାଡ଼ନ୍ତୁ ସେ କଥା ।– ଚାଲନ୍ତୁ ଅନ୍ତତଃ ସେମାନଙ୍କ ସଂସ୍କୃତି ଦେଖିବା ।

ବିରୂପାକ୍ଷ ଅଟ୍ଟହାସ କଲା : ସେମାନଙ୍କ ସଂସ୍କୃତି ? ଆପଣ ସେମାନଙ୍କ ସଂସ୍କୃତି ଦେଖି ନାହାନ୍ତି ?

ମୋର କ୍ରୋଧ ହେଲା । କିନ୍ତୁ କିଛି କହିଲି ନାହିଁ ।

ଶେଷକୁ ଆମେ ଅବଶ୍ୟ ସେମାନଙ୍କ ପଡ଼ାକୁ ଗଲୁ । ବିରୂପାକ୍ଷକୁ ଅନ୍ୟମାନେ ଏକ ପ୍ରକାର ଟାଣି ଟାଣି କିଛି ଦୂର ନେଲେ । ସମସ୍ତେ ଯେହେତୁ ଯିବାକୁ ବାହାରିଲେ, ତାର ଅବଶ୍ୟ ମନା କରିବା ଭଳି ଟାଣ ଆଉ ନଥିଲା । ତେବେ ବି ଟଣାଓଟରାରୁ ନିଜକୁ ମୁକ୍ତ କରି ସେ କହିଲା : ଆଜ୍ଞା ଯେତେବେଳେ ଗୋଟେ ସଂସ୍କୃତି ଦେଖିବେ ବୋଲି ମନ କରିଛନ୍ତି, ଚାଲ ।

ରଞ୍ଜନ୍ ଘର ଦୁଆର ମୁହଁରେ ମହୁରୀ ଓ ଢୋଲକରେ ରଙ୍ଗବତୀ ଗୀତର ଧୁନ୍ । ତିନିଜଣ ମଧ୍ୟବୟସ୍କ ଓ ଜଣେ ଗ୍ରେଟପିଲା ନାଚୁଥିଲେ । ଆମକୁ ଦେଖି ସେମାନେ ନାଚ ବନ୍ଦ କରିଦେଲେ । ମୁଁ କହିଲି : ଚାଲୁ, ଚାଲୁ । ବନ୍ଦ କଲ କାହିଁକି ?

ରବୀନ୍ ଆମକୁ ନେଇ ଦଉଡ଼ିଆ ଖଟ ଉପରେ ବସାଇଲା । ବସିବା ପାଇଁ ଜାଗା ଯଥେଷ୍ଟ ହେଲାନାହିଁ ।

ରବୀନର ମା' ଆମକୁ ଲଡ଼ୁ ଆଣି ଦେଲା । ରବୀନର ବାପା ଆସି ହାତଯୋଡ଼ି କହିଲା : ବାବୁମାନେ ଆସିବେ ବୋଲି ମୋର ବିଶ୍ୱାସ ନଥିଲା ।

ମୁଁ ପଚାରିଲି : ତମେ ମଦ ପିଇଚ ?

ସେ କହିଲା : ଏଇଟା ତ ଆମର ଖୁସିର ଦିନ ଆଜ୍ଞା !

ନାଚ ବନ୍ଦ କରି ଦେଇଥିବା ପିଲାଟି ଉଦ୍ଦେଶ୍ୟରେ ମୁଁ କହିଲି : ରଙ୍ଗବଣି ନାଚ ଠିକଏ ନାଚେ ତ୍ ରେ ବାପା !

ବିରୂପାକ୍ଷ ଅନ୍ୟ ଜଣକୁ କହିଲା : ଆଜ୍ଞା ବହୁତ ଖୁସି ହଉଛନ୍ତି ତ !

ନାଚ ଚାଲିଲା ପୁଣି ଥରେ । ମହୁରୀ ଓ ଢୋଲକ ବାଜିଲା । ଏଥର ରବୀନର ବାପା ନିଜେ ଯାଇ ଧୂମାଲ୍ ନାଚିଲା ।

ବିରୂପାକ୍ଷ କହିଲା : ହଉ, ହଉ, ହେଲା ।

ମୁଁ କହିଲି : ସେମାନେ ଆପଣଙ୍କ ପାଇଁ ନାଚୁନାହାନ୍ତି । ନିଜ ଖୁସିରେ ନାଚୁଛନ୍ତି ତ ନାଚନ୍ତୁ !

ବିରୂପାକ୍ଷ କହିଲା : ଆପଣ କହିଲେ ବୋଲି ?

କହିସାରି ବିରୂପାକ୍ଷ ଠିଆହେଲା । ତାକୁ ଦେଖି ଅନ୍ୟମାନେ ବି ।

ମୁଁ ପୂର୍ବରୁ ଠିଆ ହେଇଥିଲି ।

ଠିଆହେବା ପରେ ବିରୂପାକ୍ଷ ରବୀନକୁ ପଚାରିଲା : ଗଣ୍ଡାପଡ଼ାର କେହି ତମ ଭୋଜି ଖାଇବାକୁ ଆସି ନଥିବେ ତ !

ରଞ୍ଜନ୍ କାନମୂଳ କୁଣ୍ଡାଇଲା । ଅବଶ୍ୟ ସେ ଖୁବ୍ ନମ୍ର । କହିଲା : ନାହିଁ ସାର୍ ! ସେମାନେ ଚଣ୍ଡା ଲୋକ ତ !

ବିରୂପାକ୍ଷ କେମିତି ଗୋଟେ ହସିଲା । ତା'ପରେ ମୋ ଆଡ଼କୁ ଚାହିଁ ରଞ୍ଜନକୁ କହିଲା : ସେ କଥା ଆଜ୍ଞାଙ୍କୁ ଟିକିଏ ଭଲକରି କହ ।

ମୁଁ ହିଁ ପ୍ରଶ୍ନକଲି : ଚଣ୍ଡା ଲୋକମାନେ ? ସେମାନେ କଣ ଛୁଆଁ ଜାତି ?

: ନାହିଁ ସାର୍ : ରଞ୍ଜନ୍ କହିଲା । ସେମାନେ ମଧ୍ୟ ଆମପରି ଯେ, ସେମାନେ ଆମ ଭୋଜକୁ କେମିତି ଆସିବେ ? ଆମେ ତ ଡାକୁନୁ ମଧ୍ୟ ।

: ଡାକିଲନି ? ବିରୂପାକ୍ଷ ପଚାରିଲା ଓ ମୋ ଆଡ଼େ ଚାହିଁଲା ।

: ଡାକିଲେ ମଧ୍ୟ ସେମାନେ ଆସିନଥାନ୍ତେ । ସେମାନେ ଆମଠୁ ଟିକିଏ ବଡ଼ ଜାତି ତ ସାର୍, ସେ କଥାଟାକୁ ସେମାନେ ବେଶି ଧରନ୍ତି ! ରଞ୍ଜନ୍ କହିଲା ।

ବିରୂପାକ୍ଷ ମୋ ପିଠିରେ ହାତଦେଇ ଆଗକୁ ପାଦ ପକାଉ ପକାଉ ଶାଣିତ ପ୍ରଶ୍ନକଲା : ସଂସ୍କୃତି ଦେଖିଲେ ? ଚାଣ୍ଡାଳଙ୍କ ସାଙ୍ଗରେ ଭେଟହେଲେ କହିଦେବେ ॥

# ସୋରଡ଼ାରୁ ଆସିବା କେତେଦୂର ?

ସୋରଡ଼ା ବସ୍‌ଷ୍ଟାଣ୍ଡର ଗୋଟିଏ ହୋଟେଲ୍‌ରେ ଅତନୁ ପ୍ରଥମେ ଦେଖିଥିଲା ପିଲାଟିକୁ । ସେତେବେଳକୁ ଦିନ ଦୁଇଟା ବାଜି ସାରିଥାଏ । ଅତନୁ ପୂର୍ବରୁ ହୋଟେଲରେ ବସିଥାଏ, ପିଲାଟି ଆସିଲା । ବୟସ ଚଉଦ, ପନ୍ଦର ହୋଇପାରେ । ତା' ଦେହର ରଙ୍ଗ ଚିକ୍‌କଣ କଳା । ମୁହଁରୁ ଆକାଶୀ ରଙ୍ଗର ତେଜ ଉକୁଟି ଉଠୁଥାଏ । ଉଚ୍ଚତା ପ୍ରାୟ ସାଢ଼େ ଚାରିଫୁଟ ହେବ । ଖଣ୍ଡେ କଳାରଙ୍ଗର ଲୋଗୁକୋଟ୍ ହାଫ୍‌ପ୍ୟାଣ୍ଟ ଓ ନାଳ ରଙ୍ଗର ମଇଳା ଫୁଲସାର୍ଟ ପିନ୍ଧିଥିଲା ପିଲାଟି । ହାତର ଦୁଇ ମଣିବନ୍ଧ ପାଖରେ ସାର୍ଟର ବୋତାମ ଦୁଇଟିକୁ ସୁଦ୍ଧା ସେ ଖୋଲି ଛାଡ଼ି ନଥିଲା । ଡାହାଣ ହାତରେ ଝୁଲାଇ ଧରିଥିଲା ଗୋଟିଏ କନାବୁଜୁଳା ।

ପିଲାଟି ହୋଟେଲ ଭିତରକୁ ଆସି ଅତନୁର ଡାହାଣପଟ ଟେବୁଲ ପାଖରେ ପଡ଼ିଥିବା ଗୋଟିଏ ଚଉକିରେ ବସିଲା ଓ ଅନ୍ୟ ଚଉକିଟିରେ ତାର କନା ବୁଜୁଳାଟିକୁ ରଖିଲା । ବୁଜୁଳାଟି ପ୍ରତି ସେ ଯେ ଖୁବ୍ ସତର୍କ ତାହା ତାର ଭାବଭଙ୍ଗୀରୁ ଅତନୁ ସହଜରେ ଠଉରାଇ ପାରିଲା । ହୋଟେଲ୍‌ରେ ଅନ୍ୟ କୌଣସି ଗ୍ରାହକ ନଥିଲେ । ପିଲାଟିର କନକନ ଭାବ, ଭୟାର୍ତ୍ତ-ସନ୍ତ୍ରସ୍ତ ଚାହାଣୀ ଓ ମୁହଁର ସରଳତା ଅତନୁକୁ ବହୁତ ଭଲ ଲାଗିଲା ଓ କେଜାଣି କାହିଁକି ପିଲାଟି ପ୍ରତି ତାର ମନ ଦୟାର୍ଦ୍ର ହୋଇଉଠିଲା । ବେଶୀ ସମୟ ତା' ଆଡ଼କୁ ଚାହିଁ ରହିଲେ ସେ ଅଧିକ ତରକବ ଭାବି ଅତନୁ ତା' ଉପରୁ ଦୃଷ୍ଟି ଫେରାଇ ଆଣିଲା ଓ

ପାଖ ପାନ ଦୋକାନ ଆଡ଼କୁ ଗୃହିଁ ପାଟିକଲା : ଆଣିଲୁ କରେ ? ଠିକ୍ ସେତିକବେଳେ ପିଲାଟି ପଗ୍ଚରଲା : ସୋରଡ଼ାରୁ ଆସିକା କେତେଦୂର ଆଜ୍ଞା ?

ପିଲାଟିର କଣ୍ଠସ୍ୱରରେ ଉଭୟ କୋମଳତା ଓ କର୍କଶତା ମିଶି ରହିଥିଲା । କୈଶୋରର ଶେଷ ସୋପାନରେ ପୁଅପିଲାଙ୍କ କଣ୍ଠସ୍ୱରରେ ସେ ପ୍ରକାର ପରିବର୍ତ୍ତନ ଦେଖାଦିଏ—ଅତନୁ ଜାଣିଥିଲା । ଯେମିତିକ ପିଲାଟିଏ ସମସ୍ତ ପ୍ରକାର କୋମଳତାଠାରୁ ବିଦାୟ ନେଇ ଯାବତୀୟ କର୍କଶତାର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ଆରମ୍ଭ କରିଦିଏ ସେଇ ବୟସରୁ, ଯାହାର ପ୍ରଥମ ସୋପାନର ନିଦର୍ଶନ ହେଉଛି ତା' କଣ୍ଠସ୍ୱରର ଆପାତ କର୍କଶତା । ଅତନୁକୁ ଭଲ ଲାଗିଲା ପିଲାଟିର ସରଳ ଓ ମାଦକତାଭରା ସ୍ୱର ଏବଂ ତା'ର କୋମଳ ଜିଜ୍ଞାସା । ସେ କହିଲା : ସୋରଡ଼ାରୁ ଆସିକା ପଞ୍ଚତିରିଶି କିଲୋମିଟର ।

ପିଲାଟି ପୁଣିଥରେ ପଗ୍ଚରଲା ' ପଞ୍ଚତିରିଶି କିଲୋମିଟର ବୋଇଲେ କେତେ ମାଇଲ ?

: ବାଇଶ ମାଇଲ । ଅତନୁ କହିଲା ।

ପିଲାଟି ଟିକଏ ହସିଲା କହିଲା : ଏତିକ କଥା ଆଜ୍ଞା ଏଜାଗାର ଲୋକମାନେ କହିପାରୁ ନାହାନ୍ତି । ଜଣେ ଲୋକକୁ ପଗ୍ଚରିଲି ସେ କହିଲା : ପାଞ୍ଚଟଙ୍କାର ବାଟ । ଆଉ ଜଣେ ଦେଢ଼ ଘଣ୍ଟାର ବାଟ ବୋଲି କହିଲା । ପୁଣି କହିଲା, ଗାଡ଼ିରେ ଗଲେ ଦେଢ଼ଘଣ୍ଟା ଗୃଲି ଗୃଲି ଗଲେ ପାଞ୍ଚଘଣ୍ଟା । ଆଉ ବନ୍ୟାରେ ଗଲେ ତ ଜୀବନ ଥିବା ଭିତରେ ଆସିକାରେ ପହଞ୍ଚି ହବନି । ଦି'ବର୍ଷ ତଳେ ବନ୍ୟାରେ ଏଇଠୁ ଯୋଉ ଲୋକସବୁ ଭାସିଗଲେ, ଆସିକା ପାଖରେ ପହଞ୍ଚିବା ବେଳକୁ ସେମାନଙ୍କର ଜୀବନ ଗୃଲିଯାଇ-ଥିବ । କହିସାରି ପିଲାଟି ପୁଣିଥରେ ହସିଲା ।

ଅତନୁ ଆମୋଦିତ ହେଲା । ତାକୁ ମଧ୍ୟ ହସ ଲାଗୁଥିଲା କିନ୍ତୁ ସେ ହସ ଅଟକାଇ କହିଲା : ଏଥିରେ ହସିବାର କଥା କଣ ଅଛି ?

ନବେ ମସିହାର ବନ୍ୟାରେ ଋଷିକୁଲ୍ୟା ନଦୀରେ ଏଇ ଆଖପାଖ ଗାଁ ମାନଙ୍କରୁ ଅନେକ ଲୋକ ଭାସିଗଲେ । ସେ କଥା ଯିଏ ଶୁଣିଛି, ଦେଖିଛି ସିଏ କଣ ସହଜରେ ଭୁଲିପାରିବ ? କୋଉ ଆଳରେ ହେଲେ ସେଇ କଥା କହିବାକୁ ଖୋଜୁଥିବା ଲୋକମାନେ ସେମିତି କହନ୍ତି । ତୁ କଣ ଆସିକା ଯିବୁ କି ?

: ହଁ। ପିଲାଟି କହିଲା ।

: ତୋ ନାଁ କଣ ?

: ମନଜ ।

: ମନଜ ନା ମନୋଜ ?

: ମନଜ ସାହୁ । ଆମେ ଜାତିରେ ଗୁଡ଼ିଆ ।

: ତମ ଘର କେଉଁଠି ?

: ମକୁନ୍ଦପୁରୁ ।

: ମକୁନ୍ଦପୁରୁ ନା ମୂକୁନ୍ଦପୁର ।

: ମୁଁ ତ ପିଲାଦିନୁ ଶୁଣୁଚି ସବୁଲୋକ ମକୁନ୍ଦପୁରୁ ଏକା କହୁଛନ୍ତି ।

: ଆସିକାରୁ ବଡ଼ନଦୀ ପୋଲ ଉପରେ ଗଲେ ନଦୀ ସେପଟେ ଯୋଉ ଗାଁଟା ପଡ଼େ, ସେଇ ଗାଁ ତ ?

: ହଁ ।

: ଆସିକାର ପିଲା ହେଇକରି ତୁ ଜାଣିନୁ ଯୋରଡ଼ାରୁ ଆସିକା କେତେ ଦୁର ?

: ଏବାଟେ କେବେ ଆସିନଥିଲି ତ ଆଜ୍ଞା !

: **ଏବେ ତୁ କୋଉଠୁ ଆସିଲୁ ?**

: ଦାରିଙ୍ଗିବାଡ଼ିରୁ । ଫୁଲବାଣୀର ଦାରିଙ୍ଗିବାଡ଼ି ।

: ହଁ, ଜାଣିଛି । ସେଇଠେ ତୁ କଣ କରୁ ?

: ଗୋଟେ ହୋଟେଲ୍‌ରେ କାମ କରୁଛି ।

: ଦାରିଙ୍ଗିବାଡ଼ିରୁ କାଳିଙ୍ଗା ଘାଟି ବାଟେ ଭଞ୍ଜନଗର ଦେଇ ଆସିବା ଗଲୁନି ? ଏପଟେ କାହିଁକି ଆସିଲୁ ?

: ମୁଁ ଆଗରୁ ସେ ବାଟେ ଏକା ଯିବାଆସିବା କରିଥିଲି । ଏବାଟେ ତ ବାଟ ଚିହ୍ନିନଥିଲା କି ଗାଡ଼ି ପଡ଼ିନଥିଲା । ଏବେ କେତେଦିନ ହେଲା ଏ ରାସ୍ତାରେ ବସ, ଟ୍ରକ ଯାଉଛି । ଗୋଟେ ବସ୍ ଦାରିଙ୍ଗିବାଡ଼ିରୁ ସୋରଡ଼ା, ଭଞ୍ଜନଗର ଦେଇ କଟକ ଯାଉଛି ? ସେ ଗାଡ଼ିରେ ମୋର ଆସିବାର ଥିଲା ଯେ, ସେଇଟା ଫିଟିଗଲା । ଗୋଟେ ଟ୍ରକ୍ ଆସୁଥିଲା । ସେଥିରେ ବସି ଆସିଲି । ସମସ୍ତେ କହିଲେ ଏବାଟୁ ପାଖହବ । ଟ୍ରକବାଲା ସୋରଡ଼ା ଆସିବ ବୋଲି କହିଲା । ମୋ ପାଖରୁ ସାତଟଙ୍କା ନେଇ-ଗଲା । ଅସୁରବନ୍ଧ ପାଖରେ ଗାଡ଼ି ରଖି ଦେଇ ମତେ କହିଲା, ଗାଡ଼ି ଏଇଠି ରହିବ । ଏବେ ସୋରଡ଼ା ଯିବନି । ତୁ ଏଠାରୁ ଚାଲି ଚାଲି ପଳା । ନହେଲେ ଟିକିଏ ରହିଯା' ଅନ୍ୟ କେଉଁ ଗାଡ଼ି ଆସିଲେ ଚାଲିଯିବୁ । ବହୁତ ସମୟ ଜଗିଲି । ଗୋଟେ ପାନ ଦୋକାନ ପାଖରେ ବସିଲି । କେତେ ସମୟ ପରେ ଦୋକାନି କହିଲା, ଏବାଟେତ ବେଶୀ ଗାଡ଼ି ଚଳପ୍ରଚଳ ହେଉନି । ଚାଲି ଚାଲି ସୋରଡ଼ା ଯାଏଁ ପଳେଇ ଯା' । ଜଙ୍ଗଲିଆ ବାଟ ହେଲେ ବି ଦିନବେଳାଟାରେ କିଛି ଅସୁବିଧା ନାହିଁ । ଲୋକାବାକ ଯିବାଆସିବା କରୁଛନ୍ତି ଧରମତ । ପିଚୁରାସ୍ତା ପଡ଼ିଛି । ପଦରାଇଶୁଣୀ ଠାକୁରାଣୀକୁ ଡାକି ଡାକି ଏକମୁହାଁ ଚାଲିଯା' । କେତେ ଆଉ ବସିରହିଥାନ୍ତି ? ଚାଲି ଚାଲି ପଳେଇ ଆସିଲି ।

ଅତନୁ ସମବେଦନାରେ ଉଚ୍ଚାରଣ କଲା : ଆହା !

ମନଜ ଅବଶ୍ୟ ନିର୍ବାଦ ଜଣାପଡ଼ୁଥିଲି । କିନ୍ତୁ ସେ ଯେତେ **ସରଳ ବୋଲି ଅତନୁ ମନେ କରୁଥିଲା ପ୍ରକୃତରେ ସିଏ ସେତେ ସରଳ**

ନଥିଲା । ଦାଣ୍ଡଗଙ୍କି ବାଡ଼ରେ ହେଉ କି ଝିଲ୍ଲୀରେ ହେଉ, ହୋଟେଲ-ମାନଙ୍କରେ ଯେଉଁ ପିଲା କାମ କରନ୍ତି ସେମାନେ ବେଶୀଦିନ ସରଳ ହୋଇ ରହିପାରିବେ ନାହିଁ । ବିଭିନ୍ନ ପ୍ରକାରର ଲୋକଙ୍କୁ ଦେଖି ଓ ଅନେକ ଘଟଣାର ସମ୍ମୁଖୀନ ହୋଇ ସେମାନେ ଶୀଘ୍ର ହିଁ ସଂସାର ଘରର ପାଗ ପାଲଟି ଯାଆନ୍ତି । ପାନ ଦୋକାନ ପାଖରୁ ସେଇ ହୋଟେଲର ପିଲାଟି ଆସିକା ମାଲ୍‌ର ପଲିଥିନ୍ ପ୍ୟାକ୍‌ଟିଏ ଧରି ଆସୁଥିବା ଦେଖି ମନଜ ପଚାରିଲା : ଏଇଟା ସି.ଏସ୍. ନା ଆଜ୍ଞା ?

ଅତନୁ ପ୍ରଶ୍ନକଲା : ତୁ କେମିତି ଜାଣିଲୁ ?

ମନଜ କହିଲା : ମୁଁ ଜାଣିଚି । ଆସିକା ଚିନି କାରଖାନାରେ ପରା ଏଗୁଡ଼ାକ ତିଆରି ହୁଏ । କି ଗୋଟେ ସ୍ପିରିଟ୍ ବୋଲି କହନ୍ତି ମୋର ମନେ ପଡ଼ୁନି । ଦାଣ୍ଡଗଙ୍କି ବାଡ଼ରେ ମଧ୍ୟ ମିଳୁଚି । ହୋଟେଲକୁ ଆସି ଲୋକମାନେ ସି.ଏସ୍. ବୋଲି ମାଗନ୍ତି । ପାନ ଦୋକାନରେ, ହୋଟେଲରେ ଏ ଜିନିଷ ଫ୍ରିଜ୍‌ରେ ରଖା ହେଇଥାଏ । ଏଗୁଡ଼ାକ ମଦ । ଆଗରୁ କାଚରେ ଆସୁଥିଲା । ଏବେ ଜରିରେ ଆସୁଛି !

ତୁ ତ ବହୁତ କଥା ଜାଣିଚୁ ଦେଖୁଛି । ଅତନୁ କହିଲା ଓ ପ୍ରଶ୍ନ କଲା : ତତେ ତା'ହେଲେ ମଦ ଭଲ ଲାଗେନି ।

ମନଜ ହସିଲା । ଘାରି ଶୁଷ୍କ କରୁଣ ସେ ହସ । କହିଲା : ମତେ ଆଜ୍ଞା କାହିଁକି ଭଲ ଲାଗିବ ? ମୁଁ କଣ ଖାଇଚି ଯେ ଜାଣିବି ? ମୁଁ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା ବେଳେ ଯୋଉଦିନ ପଢ଼ା ଛୁଡ଼ି ଦାଣ୍ଡଗଙ୍କି ବାଡ଼ ପଳେଇଲି ସେଦିନ ମୋ ମା' ମତେ କହିଥିଲା, କେବେ-ହେଲେ ମଦ ଖାଇବୁନି । ମୋ ବାପା ମଦ ଖାଉଥିଲା ତ ଆଜ୍ଞା । ଜମି ପାଞ୍ଚଭରଣ ଥିଲା, ବିକିଦେଲା । କିଛି କାମ କରୁନଥିଲା । ଖାଲି ମଦ ଖାଇ ମାଆକୁ ତାଙ୍କୁ ଗାଳି କରୁଥିଲା । ଘର ମଧ୍ୟ ବନ୍ଧା ପକେଇ ଦେଇଥିଲା ଯେ ମୁଁ ହୋଟେଲରେ କାମକରି ସୁଧ ବାଢ଼ୁଚି । ମଦ ପିଇ ପିଇ ମୋ ବାପା ଅଳ୍ପ ବୟସରେ ମରିଗଲା । ତାର କଲିଜା କଣ ହେଇ ଯାଇଥିଲା ।

ସେତିକବେଳେ ହୋଟେଲର ପିଲାଟି ଗୋଟିଏ ଗ୍ଲାସ୍‌ରେ ଆସିକା ମାଲ ଢାଳି ଅଚନୁର ସାମ୍‌ନାରେ ଆଣି ଥୋଇଲା । ତାହା ଦେଖି ମନଜ ସରଳ ଭାବରେ ପ୍ରଶ୍ନକଲା : ଆପଣ ପିଇବେ ?

ଅଚନୁ ସହଜଭାବେ କହିଲା : ହଁ । ମଦ ପିଉଥିବା ଲୋକ ତତେ କଣ ଭଲ ଲାଗନ୍ତି ନାହିଁ ?

ମନଜ କହିଲା : ସମସ୍ତଙ୍କୁ ଭଲ ଲାଗେ ନାହିଁ । ଯୋଉମାନେ ମଦ ପିଇ ଟୁପ୍‌ଟୁପ୍ ଟଳି ଯାଆନ୍ତି ସେମାନଙ୍କୁ ମତେ ଭଲଲାଗେ । ବହୁତ ଲୋକ ପାଟି କରନ୍ତି, ଗାଳିଗୁଲଜ କରି ଖରାପ ବ୍ୟବହାର ଦେଖାନ୍ତି । ସେଇ ଲୋକମାନଙ୍କୁ ମତେ ରାଗଲାଗେ । ଦାରିଙ୍ଗବାଡ଼ିରେ ମଧ୍ୟ ବହୁତ ଭଲ ଲୋକ ମଦ ପିଅନ୍ତି ଯେ ! ଆମ ହୋଟେଲର ମାଲିକ ଥରେ କହୁଥିଲେ, ଆଗରୁ ଟହେରେ ଦ'ଚାରିଜଣ ମଦ ପିଉଥିଲେ ଯେ କିଏ ମଦ ଖାଉଛି ଜାଣି ହେଉ ନଥିଲା । ଏବେ ମଦ ଖାଉନଥିବା ଲୋକ ଖୋଜିଲେ ବଡ଼ କଷ୍ଟରେ ମିଳୁଛନ୍ତି । ଆମ ମାଲିକ ମଧ୍ୟ ମଦଖାଏ । ମଦ ଖାଇଥିଲେ ସିଏ ମତେ ଗେହ୍ଲାକରେ । ବାପା-ମାଆ ଆଦର କଲାଭଳି ଦେହସାରା ଆଉଁଷା ଅଣ୍ଡଳା କରେ । ମତେ ଭଲ ଲାଗେନା ।

ଅଚନୁ ଗ୍ଲାସର ମାଲ ଶେଷ କରି ସାରିଥିଲା । ହୋଟେଲର ପିଲାଟିକୁ ଡାକି କହିଲା, ଆଉ ଗୋଟେ ସି.ଏସ୍. ଆଣେ । ପିଲାଟି ପାଖରେ ଥିବା ପାନ ଦୋକାନକୁ ଗଲା । ସି.ଏସ୍. ଆଣି ଅଚନୁର ଗ୍ଲାସ୍‌ରେ ଢାଳିବା ପରେ ମନଜକୁ ପଚାରିଲା : ତୁ କଣ ଖାଇବୁ ନା ଖାଲି ବସିବାକୁ ଆସିଛୁ ?

ମନଜ କହିଲା : ମତେ ଗୋଟା ଇଡ଼ଲି ଦିଅ ।

ଅଚନୁ କହିଲା : କରେ, ଏଇ ସମୟରେ ଇଡ଼୍‌ଲି କଣ ? ଭାତ ଖାଉନୁ ?

: ଭାତ ଖାଇଥିଲି । ମନଜ ଶଙ୍କିତ ଭାବେ କହିଲା ।

: କେତେବେଳେ ଖାଇଥିଲୁ ? କୋଉଠି ?

: ଅସୁରବନ୍ଧରେ ଖାଇଥିଲି, ହୋଟେଲରେ ।

: ମିଛ କଥା । ଅସୁରବନ୍ଧରେ କୋଉଠି ଭାତ ହୋଟେଲ ଥିବ ? କହିସାରି ଅତନୁ ହୋଟେଲର ପିଲାକୁ କହିଲା : ହେଇ, ପିଲା ! ୟାକୁ ଭାତ ଦେ । ମାଛ ଦେ । ପଇସା ମୁଁ ଦେବି ।

ମନଜ ପ୍ରତିବାଦ କରିପାରିଲା ନାହିଁ ।

ଶୀଘ୍ର ଶୀଘ୍ର ଖାଇଦେଇ ମନଜ ଉଠିଲା । ହାତ ଧୋଇସାରି ଆସି ତା ବୁଜୁଳା ଉଠାଇଲା । ଅତନୁ କହିଲା : ଆସିକା ଯିବୁ ବୋଲି କହୁଥିଲୁ ପରା ? ହୋଉ, ତୁ ଆଗରେ ଚାଲେ । ଜରଉ ନଦୀର ବ୍ରିଜ୍ ବନ୍ୟାରେ ଭାଙ୍ଗି ଯିବା ପରଠୁ ଦୁଇବର୍ଷ ହେଲା ତ ଆସିକା ଗାଡ଼ିସବୁ ଆଉ ସୋରଡ଼ା ଆସିନପାରି ଏଇ ବର୍ଷାଦିନେ ଜରଉ ନଦୀ ସେପଟେ ରହିଯାଉଛନ୍ତି । ନଦୀ ଯାଏଁ ଚାଲି ଚାଲି ପଳା । ବଜାର ବାଟେ ଗଲେ ପାଖ ପଡ଼ିବ । ହାଇସ୍କୁଲ ପାଖରେ ପହଞ୍ଚିଲେ ବାଁ ପଟେ ବୁଲିବୁ । ସେଇଠୁ ସିଧାରାସ୍ତା । ଯା, ହୋଟେଲ ପଇସା ମୁଁ ଦେଇଦେବି ।

ମନଜ ଚାଲିଗଲା । ହୋଟେଲରୁ ଖା'ପିଅ ସାରି ଅତନୁ ଆସି ଜରଉ ନଦୀ ପାଖରେ ପହଞ୍ଚି ଦେଖିଲା ସୋରଡ଼ା ଘାଇର ହିଡ଼ ଉପରେ ଠିଆ ହେଇ ମନଜ ଘାଇ ଆଡ଼କୁ ଦେଖୁଛି । ସେ ପାଟିକଲା : ଆରେ ହେ ମନଜ ! ଜଲଦି ଚାଲିଆ । ଡାକଦେଇ ଅତନୁ ପୋଷାକ ପାଲଟି ଗାମୁଛା ଖଣ୍ଡେ ପିନ୍ଧିଲା ଓ ନଦୀ ଭିତରେ ପଶିଲା । ମନଜ ଘାଇ ହିଡ଼ାରୁ ଓହ୍ଲାଇ ନଈ କୂଳକୁ ଆସିଲା ବେଳକୁ ଅତନୁ ମଝିନଈରେ । ମନଜ ମଧ୍ୟ ବୁଜୁଳାରୁ ଗାମୁଛା ବାହାର କରି ପିନ୍ଧିଲା । ଜାମା, ପ୍ୟାଣ୍ଟ ବୁଜୁଳାରେ ରଖି ବୁଜୁଳାଟିକୁ ମୁଣ୍ଡରେ ଧରିଲା ଓ ନଦୀ ଭିତରେ ପଶିଲା । ଅତନୁ ନଈ ପାରି ହେଇ ସେକୂଳରେ ଠିଆ ହେଲା । ଦେଖିଲା, ମନଜ ନଈର ମଝାମଝି ଆସି ଠିଆ ହେଇ ରହିଛି । ତାକୁ ସେଇଠି ଛାତିଏ ପାଣି । ତା' ମୁହଁ କେମିତି ବିବର୍ଣ୍ଣିଆ, କଳା ଦେଖା-

ଗଲାଣି । ଭୟରେ ଯେମିତି କ ଆଉ ମୂହୂର୍ତ୍ତିକ ପରେ ତା'ର ଜୀବନ ଗୃଲଯିବ କମ୍ବା ସେ ଗୋଡ଼ ଉଠାଇବା ମାତ୍ରେ ପାଣିସୁଅର ଧକ୍କା ସମ୍ଭାଳି ନପାରି ଭାସିଯିବ । ନଈରେ ହୁଏତ ପାଣି ବଢ଼ୁଛି । ଅଥବା ମନଜର ପାଦତଳୁ ବାଲି ଧସିଯାଉଛି । ମନଜ ଚିତ୍କାର କଲା : ବୁଡ଼ଗଲି, ମରିଗଲି !

ଅତନୁ ପାଟିକଲା : ଥା, ଥା, ଥା, ଥା । ସେଇଠି ଠିଆ ହୋଇ ରହ । ପାଦେ ବି ଘୁଞ୍ଚନା । କହୁସାରି ଅତନୁ ପାଣିଭିତରେ ପଶିଲା । ମନଜ ପାଖରେ ସେ ପହଞ୍ଚିବା ମାତ୍ରେ ମନଜ ତାକୁ ପ୍ରାଣବିକଳରେ ଜାବୁଡ଼ି ଧରିଲା । ଅତନୁ ଆଶ୍ୱାସନା ଦେଲା : ହଉ, ହଉ ବ୍ୟସ୍ତ ହ'ନା । ଆଉ କିଛି ହବନି । ଚଣ୍ଡାଳ ଇହାପ, ଡଙ୍ଗାରେ ନଯାଇ ପାଣିରେ କାହିଁକି ପଶିଲୁ ? ଟିକିଏ ସମୟ ପରେତ ଡଙ୍ଗା ଏପଟୁ ସେପଟକୁ ଯାଇଥାନ୍ତା । ଟଙ୍କାଟେ ଦେଇ ଆରାମରେ ନଈପାରି ହୋଇଥାନ୍ତୁ । ବଡ଼ ମଣିଷମାନଙ୍କୁ ଯୋଉଠି ଅଣ୍ଟେ ପାଣି, ତତେ ସେଇଠି ବେକେ ହବନି ? ଭାଗ୍ୟ ଭଲ, ବଞ୍ଚିଗଲୁ । ନହେଲେ ଜୀବନ ଯିବାପରେ ଆସିକାରେ ପହଞ୍ଚିଥାନ୍ତୁ ।

ମନଜକୁ କୂଳରେ ଛାଡ଼ି ଅତନୁ ତାକୁ ପାଲଟା ପାଲଟି ହେବାକୁ କହିଲା ଓ ନିଜେ ପୁଣିଥରେ ନଦୀରେ ପଶି ଗାଧୁଆପାଧୁଆ କଲା । ସେ ଗାଧୋଇ ସାରି ଫେରିବା ଯାଏଁ ମନଜ ସେଇଠି ତାକୁ ଅପେକ୍ଷା କରିଥିଲା । ଅତନୁ ପୋଷାକ ବଦଳାଇବା ପରେ ଦୁହେଁ ରାସ୍ତା ଉପରକୁ ଉଠିଲେ । ରାସ୍ତାଉପରେ ଗୋଟିଏ ମାତ୍ର ୪୦୭ ଗାଡ଼ି ଆସିକା ଆଡ଼କୁ ମୁହଁ କରି ଠିଆ ହୋଇଥିଲା । ଅତନୁକୁ ଦେଖି ଗାଡ଼ି ପାଖରୁ ଜଣେ ଲୋକ ଝପଟି ଆସି କହିଲା : ସାଉକାରେ ନମସ୍କାର । ଆଜିକାଲି ଆଉ କଣ ଦେଖାନାହିଁ ! ସୋରଡ଼ାବାଟ ପକେଇ ଦେଲ ନା କଣ ?

ଅତନୁ କହିଲା : ନାଇଁ, ସେକଥା ନାଇଁ ଯେ ମୋଟର ସାଇ-କେଲରେ ଆସି ଦ୍ୱ'ଦ୍ୱ'ଟା ନଦୀ ଦୁଇଥର ପାରିହେବା ତ କଠିନ କଥା । ବସ୍‌ରେ ଆସିଲେ ସମୟ ନଷ୍ଟ । ସେତେ ଜରୁରୀ ଥିଲେ ନିଜେ ଆସୁଚି । ନହେଲେ ଲୋକ ପଠେଇ ଦେଉଛି ।

ଲୋକଟି କହିଲା : ଗୃହସ୍ଥ ଗୃହସ୍ଥ ଦ'ବର୍ଷ ବଢ଼ିବାକୁ ବସିଲାଣି । ଆସିକା ଆଉ ସୋରଡ଼ା ବ୍ରିଜ୍ କଣ ଆଉ ତିଆରି ହୋଇପାରିବନି ଆଜ୍ଞା ? ଆପଣଙ୍କର ତ ମନ୍ତ୍ରୀ ଏମ୍.ଏଲ୍.ଏ.ଙ୍କ ସାଙ୍ଗରେ ବସାଉଠା । ଆପଣ ଜାଣିଥିବେ । ବିଶ୍ୱବ୍ୟାଙ୍କରୁ ଋଣ ମଗାହୋଇଥିଲା, କଣ ହେଲା ?

ଅତନୁ କହିଲା : ଆହେ ଇଏ କ'ଣ କଟକର ମହାନଦୀ କ କାଠଯୋଡ଼ି ପୋଲ ହେଉଚି ? ତମେ ମଧ୍ୟ ବାଇମୁଣ୍ଡି ଭଳିଆ ଆତୁର ହୋଉଛ ଯେ, ମୁଁ କଣ କହିବି ? ହବ । ନହୁଅନ୍ତା କ ଆଉ ? ଆମ ଲୋକମାନଙ୍କର ଧୈର୍ଯ୍ୟ ଟିକିଏ ବେଶୀ ତ, ତାର ପରୀକ୍ଷା ନିଆହେଉଛି, ଆଉ କଣ ?

: ଆସିକା, ସୋରଡ଼ା ଭଳି ବିଜନେସ୍ ସେଣ୍ଟରକୁ ବାଟ ବନ୍ଦ ହୋଇଯିବା ଦ୍ୱାରା ସରକାରଙ୍କର କଣ କିଛି କ୍ଷତି ହେଉନି ? ସେଥିରେ ପୁଣି ଆସିକା ହେଲା ଗଞ୍ଜାମର ଆଉ ଓଡ଼ିଶାର ଗୋଟେ ବଡ଼ ବସ୍ ଜଙ୍କସନ୍ । ଲୋକଟି କହିଲା । ଅତନୁ କଥାଟାକୁ ଟାଳି ଦେବା ପାଇଁ କହିଲା : ସେ ବଡ଼ ବଡ଼ କଥା ଚିନ୍ତାକରି ଆମକୁ କଣ ମିଳିବ ? ଛାଡ଼ ସେ ସବୁ । ନିଜକଥା କ'ଣ କୁହ । ଏଇ ମେଣ୍ଢାଗାଡ଼ିଟା ତମର ପରା ?

ଲୋକଟି ସଲଜ୍ଜଭାବରେ ହସି କହିଲା : ୪୦୭ ଟାକୁ ମେଣ୍ଢାଗାଡ଼ି କଣ କହୁଛନ୍ତି ଆଜ୍ଞା ?

ଅତନୁ ପରିହାସ କଲା : ନାଇଁ ଆଉ କଣ ? ୪୦୨ ଟାରେ ପାଲ ଦେଇଦେଇ ଦିଖଣ୍ଡି ଲମ୍ବା କାଠ ବେଞ୍ଚ ପକେଇ ଦେଲେ ମଣିଷ ଗାଡ଼ି ହୋଇଯିବ ? ବାର, ଚଉଦ ଜଣ ବସିଲେ ବେଳକୁ ଗୁଳଣି ଲୋକଙ୍କୁ ଠେଲି ଆଣି, ଟୁଙ୍ଗାଇ ନେଉଛ । ମେଣ୍ଢାଗାଡ଼ି ନୁହେଁ ଆଉ କଣ ? ଛେଳି ମେଣ୍ଢାଠୁ ମଣିଷ ଆଉ କେତେ ଭିନ୍ନ ତମର ଏ ଗାଡ଼ିରେ ? ଗଞ୍ଜାମରେ ଏ ଗାଡ଼ି ବହୁତ ବେଶୀ ହୋଇଗଲା । ହଉ ଛାଡ଼ । ଆଗ ସିଟଟା ଖାଲିଅଛି ? ଲୋକଟି କହିଲା : ଜଣେ ବସିଚି । ଗୁଲିନ୍ତୁ ଏଡ଼ଜଷ୍ଟ କରିଦେବା ।

ହଉ ଗୃଲ । ଡ୍ରାଇଭରକୁ କୁହ, ଆଉ ଘୁଁ ଘୁଁ ନକରି ଗାଡ଼ି ଛାଡ଼ିବ । ଏ ପିଲାଟିକୁ ପଛରେ କୋଉଠି ବସେଇ ଦିଅ ।

ଗାଡ଼ି ଗୃଲିଲା । ଗାଡ଼ି କାଳଷଣ୍ଡପୁରରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଗୃରଟା ବାଜି ଛତିଶି ମିନଟ୍ । ଅତନୁ ମନଜକୁ କହିଲା : ନଈକୂଳକୁ ଶୀଘ୍ର ଗୃଲଯା । ଡଙ୍ଗାରେ ବସି ଆରପଟକୁ ଯିବୁ । ଲୋକମାନେ ନଈରେ ପଶି ଯାଉଥିଲେ ବି ପଇସା ଖର୍ଚ୍ଚ ହେଇଯିବ ବୋଲି ଡଙ୍ଗା ଛାଡ଼ି ନଈରେ ପଶିଯିବୁନି । ଇଏ ବାପା ଜଉରି ନଦୀ ନୁହେଁ, ରୁଷିକୁଲ୍ୟା । ସୁଅ ବି ଯୋର । ପାଣି ମଧ୍ୟ ବେଶୀ ଥିବ । ଏଇନେ, ଏ ଦଶଟଙ୍କା ରଖିଥା' ।

ମନଜ ଟଙ୍କା ଧରିଲା ନାହିଁ । କହିଲା : ମୋ ପାଖରେ ଅଛି । ଅତନୁ କହିଲା : ଥିଲେ କଣ ହେଲା ? ନେ ରଖିଥା । ମନଜ ନେଲା ନାହିଁ । ଘୁଞ୍ଚି ଘୁଞ୍ଚି ଗୃଲିଗଲା । ଗୃରି, ଛ ପାହୁଣ୍ଡ ଯାଇ ପଗ୍ଚରିଲା : ଆପଣ ଆସିବା ଯିବେ ନା କ ?

: ଯିବି ଯେ, ଏଇଠି ଟିକେ କାମ ଅଛି । ପରେ ଯିବି । ତୁ ଯା' ।

ମନଜ ଅତନୁକୁ ନମସ୍କାର କଲା ଓ ତା'ପରେ ଏକମୁହାଁ ନଈକୂଳ ଆଡ଼େ ଗୃଲିଲା ।

ଅତନୁ ଗୋଟିଏ ହୋଟେଲରେ ବସି ଗୃ' ପିଇଲା । ହୋଟେଲରୁ ବାହାରି ପାଖ ପାନ ଦୋକାନରୁ ସିଗାରେଟ ମାଗିଲା । ପାନ ଘର୍ଷିବାକୁ କହିଲା । ଗୃରି ପାଞ୍ଚ ଜଣ ଲୋକ ତାକୁ ଘେରିଗଲେ । ସେମାନଙ୍କ ସହ ଗପିଲା । ସେମିତିରେ ମାତ୍ର ପନ୍ଦର କୋଡ଼ିଏ ମିନଟ ସମୟ ବିତିଛି କି ନାହିଁ, ନଦୀ ଆଡ଼ୁ ହୋ' ହୋ' ଧ୍ୱନି ଶୁଭିଲା । କେହି କେହି ଲୋକ ନଦୀ ପାଖକୁ ଧାଇଁଲେ । ତାହା ଦେଖି ଅତନୁ ଓ ତା' ପାଖରେ ଥିବା ଲୋକମାନେ ମଧ୍ୟ ଦୌଡ଼ିଗଲେ । ନଈକୂଳରେ ପହଞ୍ଚି ଅତନୁ ଜଣେ ଲୋକକୁ ପଗ୍ଚରିଲା : କଣ ହେଲା ? କିଏ ବୁଡ଼ିଗଲା କି ?

: ହଁ, ଗୋଟେ ପିଲାଟେ ଡଙ୍ଗାରୁ ଖସିପଡ଼ି ଭସିଗଲା ।

: କେତେ ବଡ଼ ପିଲା ?

: ପନ୍ଦର, ଷୋହଳ ବର୍ଷ ବୋଲି କହୁଛନ୍ତି ।

: ପାଣି କଣ ବେଶୀ ଅଛି ।

: ହଁ, ମଣିଷେ ଉପରେ ହବ ।

: ପିଲାଟା ଡଙ୍ଗାରୁ ଖସିବା ପରେ ଆଉ ଦିଶିଲା କି ନାହିଁ ?

: ଥରେ ଏକା ପିଣି ତା'ର ମୁଣ୍ଡଟା ଦିଶିଥିଲା, ହୋ ସେ ଗଛ ସିଧାରେ ।

: କିଏ ତାକୁ ଉଦ୍ଧାର କରିବାକୁ ଡେଇଁଲେନି ?

କିଏ ଡେଇଁବ ? ଜୀବନ କାହାକୁ ପିତା ଲାଗୁ ଛି ?

ଅତନୁ ଏପଟକୁ ଡଙ୍ଗା ଆଣିବାପାଇଁ ଡଙ୍ଗା ବାଲାକୁ ଡାକ ପକାଇଲା । ଡଙ୍ଗାଧର ଦୁଇ ନାଉରି ଏପଟେ ଆସିଲେ । ଅତନୁ ପଚାରିଲା : ତମେ ଦି'ଜଣ କେମିତି ନାଆ ବାହୁଛ କରେ, ଲୋକ ପାଣିକୁ ଖସି ପଡ଼ୁଛନ୍ତି ? ଆମେ କଣ କରିବୁ ଆଜ୍ଞା ? ଏଇଠିକା ଲୋକଙ୍କର ତ ଡଙ୍ଗାରେ ବସିବା ଅଭ୍ୟାସ ନାଇଁ । ଆମେ ଯେତେ ସତର୍କ ରହିଲେ ବି ଲୋକେ ଡଙ୍ଗା ହଲେଇ ଦେଉଛନ୍ତି, ଡଙ୍ଗାର ଦି'ପଟ ଧାରରେ ବସିଯିବାକୁ କହିଲେ କିଏ ବସୁଚି, କିଏ ବସୁନି । ଗୋଟେ ପଟେ ଦଶଜଣ ବସିଲେ ଆରପଟେ ଦି'ଜଣ । ଏଇ ଜାଗାରେ ଡଙ୍ଗା ଚଲେଇବା ଭାରି କଷ୍ଟ । ସେ ପିଲାଟା ତ ଆଜ୍ଞା ବସିଲାନି କି ତା ବୁଜୁଳାଟାକୁ ଡଙ୍ଗାରେ ରଖିଲାନି । କହିଲା : କାଦୁଅ ପାଣି ଲାଗିଯିବ । ଡଙ୍ଗା ଯେମିତି ଟିକିଏ ସୋତରେ ହଲି ଯାଇଚି ତା'ର ଦି'ହାତ ଉପରକୁ ହେଇଗଲା । ପ୍ରଥମେ ତା ବୁଜୁଳାଟି ତା'ର ହାତରୁ ଖସି ପାଣିରେ ପଡ଼ିଲା । ତା'ପରେ ସିଏ ବି ପଡ଼ିଗଲା, ନା ବୁଜୁଳା ଲୋଭରେ ଡେଇଁ ପଡ଼ିଲା ମୁଁ କହି ପାରିବିନି । ଜଣେ ନାଉରି କହିଲା ।

ଘର ଅବସନ୍ନ କଣ୍ଠରେ ଅତନୁ କହିଲା : ହଉ, ଚାଲ, ସେ କୂଳକୁ ଚାଲ ।

ଡଙ୍ଗା ପୁଣ୍ଡ଼ରୀକେଶ୍ୱର ପଲ୍ଲୀପଟ କୂଳରେ ଲାଗିବାମାତ୍ରେ ଅତନୁ ଡଙ୍ଗାରୁ ଡେଇଁପଡ଼ି ଡାକ୍ତରଖାନାକୁ ଗଲା । ସେଠାରୁ ଫାୟାର ଷ୍ଟେସନକୁ ଫୋନ କଲା । ପୁଣି ନଈ କୂଳକୁ ଆସି ହୁଡ଼ାରେ ହୁଡ଼ାରେ କିଛି ଦୂର ଧାଇଁଲା । ଫେରି ଆସି ରିକ୍‌ସା ଧରି ମୁକୁନ୍ଦପୁର ଗଲା । ପଚାରି ପଚାରି ମନୋଜର ଘର ପାଖରେ ପହଞ୍ଚିଲା । କମ୍ ଉଚ୍ଚତାର ଚାଳଘରଟିଏ । ଘରର ଛପର ଦୁର୍ବଳ ହେଲାଣି । ପଚଳା ଛଣର ଆସ୍ତରଣ । ଚାଳର ଉପର ଭାଗ କଳା ଧରିଲାଣି । ଝାଟିମାଟିର ଘର । କାନ୍ଥରୁ ମାଟି ଖସିଯାଇ ସ୍ଥାନେ ସ୍ଥାନେ ଝାଟି ଦେଖାଯାଉଛି । କବାଟ ଖୋଲାଥିଲା । ଅତନୁ ଘର ଭିତରକୁ ଗଲା । ବଖୁରିକିଆ ଘର । ତା'ପରେ ବାରଣ୍ଡା । ବାରଣ୍ଡାରେ ଚୁଲି ପକାହୋଇଛି । ବାରଣ୍ଡା ଧାରରେ ବାଉଁଶ ପାଉଆର ଗୁଞ୍ଜିଟିଏ ତେରଛା ହୋଇଛି ଚାଳରେ ଭରାଦେଇ । ଅତନୁ ଡାକିଲା : କିଏ ଅଛ ?

ଗୁଞ୍ଜି ସେପଟୁ ସ୍ତ୍ରୀ ଲୋକଟିଏ ଆସିଲା । ମଳିନ ମୁହଁ । ଶ୍ରୀହୀନ ବେଶ । ଚିରା, କୋଚଟ ଫୁଲଫୁଟା ଧଳାଲୁଗା ଖଣ୍ଡେ ପିନ୍ଧିଛି । ଅତନୁ ପଚାରିଲା : ତମେ ମନୋଜର ମା' ?

ହଁ ।

ମୁଁ ହାରଙ୍ଗିବାଡ଼ରୁ ଆସିଛି । ମନୋଜ ଏ ଭିତରେ କେବେ ଗାଁକୁ ଆସିବ ବୋଲି କହୁଥିଲା ।

ମନୋଜର ମା' କହିଲା : ଆଜି ତ ପୋଷ୍ଟରେ ମନୋଜର ଚିଠି ଆସିଛି । ମୁଁ ତ ପଢ଼ା ଲେଖା ଜାଣିନି । କାନୁଆଡାକୁ ଖୋଜିଲି ସେ, ମିଳିଲାନି । ପିଲାଲୋକ, କୁଆଡ଼େ ବୁଲୁଥିବ । ଥିଲେ ଚିଠିଟା ପଢ଼ି ଦେଇଥାନ୍ତା । ମୋ ମନୋଜ କେମିତି ଅଛି ବାପା ?

ଅତନୁ କହ୍ଣୁ କହି ପାରିଲା ନାହିଁ । ମନଜର ମା' ବାରଣ୍ଡାରୁ ଘର ଭିତରକୁ ଆସିଲା । କାନ୍ଥକୁଲାରୁ ପୋଷ୍ଟକାର୍ଡ଼ଟିଏ ଆଣି ଅତନୁ ହାତରେ ଦେଲା । ମନଜର ଚିଠି ।

ଅତନୁ ଚିଠିଟି ପଢ଼ିଲା :

ନମସ୍କାର ମା ଜାଣିବୁ ମୁଁ ଏଠାରେ ଭଲରେ ଅଛି । ଆଶାକରେ ଭଗବାନଙ୍କ ଦୟାରୁ ତୁ ସେଠାରେ ଭଲରେ ଥିବୁ । କାନୁଆ ହାତରେ ତୁ ଲେଖି ପଠାଇଥିବା ଚିଠି ମତେ ମିଳିଲା । ମୁଁ ଏମାସ ଭିତରେ ନିଶ୍ଚୟ ଗାଁକୁ ଯିବି । ଏଥର ମୁଁ ସୋରଡ଼ା ବାଟେ ଆସିବା ଯିବ । ଏଇଠୁ ସୋରଡ଼ାକୁ ଗାଡ଼ି ଚାଲିଲାଣି । ଏବାଟେ ଗଲେ ପାଖ ପଡ଼ିବ । ସୋରଡ଼ାରୁ ଆସିବା କେତେ ବାଟ ମୁଁ ଜାଣିନି । ଅଳ୍ପଦୂର ହୋଇଥିବ ପରା ।

.....................

ଅତନୁ ଆଉ ପଢ଼ି ପାରିଲା ନାହିଁ । ତା'ର କଣ୍ଠ ରୁଦ୍ଧ ହୋଇ ଆସିଲା । ପକେଟରୁ ଦୁଇଶହ ଟଙ୍କା ବାହାର କରି, ଚିଠି ସହିତ, ମନଜର ମା'ର ହାତରେ ଧରାଇ ଦେଲା ଓ ଆଖି ପିଛୁଳାକେ ଘରୁ ବାହାରି ଆସିଲା, ମୁହଁ ଲୁଚାଇ ।



# କାନ୍ଥ

କୋଠରୀ ଭିତରେ ଗୋଟିଏ ମାତ୍ର ଖଟ ପଡ଼ିଛି । ଅନ୍ୟ କୌଣସି ଆସବାବପତ୍ର ନାହିଁ । ଚଟାଣ ଖୁବ୍ ପରିଷ୍କାର, ଧୂଳିକଣାଟିଏ ବି ନଥିବାପରି । ଏତେ ପରିଷ୍କାର ଯେ ଚଟାଣରେ ଭାତ ଥୋଇ ଖାଇହେବ । କାନ୍ଥ ଆଲମିରାର ଥାକଗୁଡ଼ିକରେ ଅଜସ୍ର ଫୁଲ ଫୁଟିଥିବା ବଗିଚା ଭଳି ରଙ୍ଗବେରଙ୍ଗ ପୁସ୍ତକ । ସୁସଜ୍ଜିତ । ଫ୍ୟାନ୍ ଘୂରୁଛି । କେଉଁଠି ବି ଟିକିଏ ବୋଲି ଟିକିଏ ବୁଢ଼ୀଆଣି ଜାଲ କି ଅଳନ୍ଧୁ ନାହିଁ ।

ଖଟ ଉପରେ, ପୂର୍ବ ଦିଗକୁ ପିଠି କରି ବରୁଣ ବସିଥିଲା । ଜ୍ଞାନ ଦାସ ତା'ର ବସିବା ଭଙ୍ଗୀ ବାରମ୍ବାର ବଦଳାଇ, ସେତେବେଳକୁ, ଉତ୍ତର ଦିଗକୁ ମୁହଁ କରି ବସିଥିଲା ଓ ସିଗାରେଟ୍ ଟାଣୁଥିଲା । ତେବେ ସିଗାରେଟ୍‌ଟିରେ ଅଗ୍ନି ସଂଯୋଗ କରିବା ପୂର୍ବରୁ ସେ କହିଥିଲା, "ମୋର ଅସଫଳତା ଗୁଡ଼ିକ, କେବଳ ମୋର ଦୁର୍ଭାଗ୍ୟ ।" ସେକଥା ସେ କହିବା ବେଳକୁ ବରୁଣ ସେଇ କୋଠରୀର ପଶ୍ଚିମପଟ କାନ୍ଥରେ ଝୁଲୁଥିବା ଚିତ୍ରପଟଟିକୁ ଦେଖୁଥିଲା ।

## ପ୍ରଥମ କାନ୍ଥ

ପଶ୍ଚିମପଟ କାନ୍ଥରେ ଝୁଲୁଛି ଚିତ୍ରପଟଟିଏ । ଯୀଶୁଖ୍ରୀଷ୍ଟଙ୍କର । ସେ କ୍ରୁଶବିଦ୍ଧ । ମୁଣ୍ଡଟି ତଳକୁ ପଡ଼ିଛି । ଯେପରିକି ମୃତ୍ୟୁଛଡ଼ା ଅନ୍ୟ ଲକ୍ଷ୍ୟ

ନାହିଁ ବା ନଥିଲା । ଯେପରିକ ନିଜକୁ ରକ୍ଷା କରିବାର ସାମାନ୍ୟତମ ଶକ୍ତି ନାହିଁ ବା ନଥିଲା । ଯେପରି କ ଆଉ କୌଣସି ଅଭିଳାଷ ମଧ୍ୟ ନାହିଁ । କ୍ରୁଶବଦ୍ଧ କରିଥିବା ନିର୍ବୋଧମାନେ, ଯୀଶୁଙ୍କର ଶେଷଇଚ୍ଛା ଅନୁଯାୟୀ, ଗଡ୍ (ଈଶ୍ୱର ?)ଙ୍କ ଠାରୁ ଦୁଏତ ଆଞ୍ଜୁଳାଏ ଆଞ୍ଜୁଳାଏ କ୍ଷମା ପାଇସିବା ପରେ ସେହିସ୍ଥାନ ଛାଡ଼ି ଚାଲିଯାଇଛନ୍ତି । ଯୀଶୁ ଉଦାର ଭାବେ ସେମାନଙ୍କ ପାଇଁ ଈଶ୍ୱର (God ?)ଙ୍କ ଠାରେ କ୍ଷମାଭିକ୍ଷା କରିନଥିଲେ ସେମାନଙ୍କୁ ନିଶ୍ଚୟ ସାଙ୍ଗେସାଙ୍ଗେ ଶୂନ୍ୟଚଢ଼େଇ ମାରିଥାନ୍ତା ଓ ସେମାନେ ବି ଚିତ୍ରପଟରେ, ଯୀଶୁଙ୍କର ପାଦତଳେ, ମରିପଡ଼ିଥିବା ଦୃଶ୍ୟ ଦେଖିବାକୁ ମିଳିଥାନ୍ତା । ସେମାନେ ଚାଲିଯାଇଥିଲେ । ପ୍ରଶାସକ-ମାନେ ବି ସେମାନଙ୍କୁ ଧରିବାକୁ ଉଦ୍ୟମ କରିନଥିବେ । ଚିତ୍ରପଟରେ ସେମାନଙ୍କର ଛବି ନଥିଲା । ଅବଶ୍ୟ ଅନେକ କ୍ଷେତ୍ରରେ ଗର୍ହିତ ପାପରେ ଲିପ୍ତଥିବା (ଗୁରୁତ୍ୱପୂର୍ଣ୍ଣ ?/ମୂଲ୍ୟବାନ୍ ?) ଅପରାଧୀମାନଙ୍କର ନାଁ ଖବର-କାଗଜରେ ପ୍ରକାଶ କରାନଯିବା ଭଳି, କ୍ରୁଶବଦ୍ଧ କରିଥିବା ପାପୀମାନଙ୍କର (ନା, ସେମାନେ କଣ କରୁଛନ୍ତି ତାହା ନିଜେ ଜାଣି ନ ପାରୁଥିବା ସରଳ ମଣିଷ ସେମାନେ ?) ଚିତ୍ରପଟରେ ସ୍ଥାନ ପାଇବାର ଅଧିକାର ନାହିଁ । କିମ୍ବା ଚିତ୍ରକର ସେମାନଙ୍କୁ ବା ସେମାନଙ୍କ ରୂପ (ଚିତ୍ରକର ପାଇଁ ରୂପ ବଡ଼ ନା ସ୍ୱରୂପ ?) ଦେଖି ନଥିବାରୁ ଚିତ୍ରରେ ସେମାନଙ୍କୁ ଦେଖାଇ ଦେବା ତା'ପକ୍ଷରେ ସମ୍ଭବ ହୋଇନାହିଁ ।

ବରୁଣ ଚିତ୍ରପଟ ଉପରୁ ଦୃଷ୍ଟି ଫେରାଇ ଆଣିଲା । ଜ୍ଞାନ ଦାସ ଆଡ଼େ ଏକ ଲୟରେ ଚାହିଁ କହିଲା : କେବଳ ତମେ କାହିଁକି, ଅଧିକାଂଶ ଲୋକ ନିଜ ବିଫଳତା ସବୁ କେବଳ ଦୁର୍ଭାଗ୍ୟଜନିତ ବୋଲି ମନେ କରିଥାନ୍ତି । ସେମିତି ଭାବିଲେ ବରଂ ଚଳିଯାଇପାରେ । କିନ୍ତୁ କହିବୁଲିବ କାହିଁକି ? କିଏ ବା ଏବେ ତମର ସାମର୍ଥ୍ୟକୁ ସନ୍ଦେହ କରୁଛି ? ପ୍ରକୃତରେ କଣ ହୁଏ ଜାଣ ? ନିଜର ଅସଫଳତା ଗୁଡ଼ିକ ପାଇଁ ମଣିଷ ଅନ୍ୟକାହାକୁ ଦୋଷ ଦେବାକୁ ନ ପାଇଲେ ଶେଷରେ ନିଜ ଭାଗ୍ୟ ଉପରେ ସବୁକିଛି ଲଦିଦିଏ ସିନା; ନିଜକୁ ଦୋଷଦେବା ଶିଖେନାହିଁ ବୋଲି ହିଁ ଜୀବନରେ ଏତେଗୁଡ଼ାଏ ବିଫଳତା ଭୋଗ କରିବାକୁ ସେ ବାଧ୍ୟ ହୋଇପଡ଼େ । ତା' ପାଇଁ ବରଂ ବିଫଳତା ଏକ ଉପଭୋଗର

ବିଷୟ । ଯେପରି କି ସେ ନିଜର ବିଫଳତା ପାଇଁ ଖୁବ୍ ଗର୍ବିତ ! ଯେପରି କି ଯଡ଼୍‌ୟନ୍ତ୍ର ସଫଳତା (ଉପଳ ଖଣ୍ଡ ?) ବି ସେ ପାଇଥିବ ସେଥିରୁ କାହାର କିଛି ପ୍ରେରଣା ବା ଉପକାର ପାଇବାର ନାହିଁ ! ଅନ୍ୟ କାହାକୁ ଦୋଷ ଦେବା ତ ଦୂରର କଥା, ନିଜକୁ ସୁଦ୍ଧା ଦୋଷ ନଦେଇ ସବୁକିଛିକୁ ଭାଗ୍ୟ ଉପରେ ଛାଡ଼ିଦେବା ମଧ୍ୟ ଏକପ୍ରକାର ମହାନ୍‌ତା ହୋଇଥାଇ-ପାରେ !

## ଦ୍ୱିତୀୟ କାନ୍ଥ

ବରୁଣ ବାଁ ପଟକୁ ପିଠି ବୁଲାଇବାରୁ ପୂର୍ବଦିଗର କାନ୍ଥରେ ଝୁଲୁଥିବା ସୁଭାଷ ବୋଷଙ୍କର ବଡ଼ୋଇକରା ଛବି ତା ସାମ୍‌ନାରେ ରହିଲା, ସିଧାସିଧି । ସୁଭାଷ ବୋଷଙ୍କ ଶରୀର ପୂର୍ଣ୍ଣ ସାମରିକ ପୋଷାକରେ ଆବୃତ୍ତ । ଆଜିକାଲି ନେତାଜୀଙ୍କ ଉପରେ କେଉଁଠି ଖାସ୍ କିଛି ସମ୍ବାଦ ପ୍ରକାଶ ପାଏନାହିଁ । ଗୋଟିଏ ନିର୍ଦ୍ଦିଷ୍ଟ ରାଜନୈତିକ ଦଳ ତାଙ୍କର ଜନ୍ମଦିବସ ପାଳନ କରିବାର ପଣ ନେଇଯାଇଥିବାରୁ ସରକାର ବା ଅନ୍ୟ କେହି ପାଳନ କରନ୍ତି ବି ନାହିଁ । ସୁଭାଷଙ୍କର ମୃତ୍ୟୁଦିବସ ପାଳିତ ହୁଏନା । ସେ କେବେ ଓ କେଉଁଠି ମୃତ୍ୟୁବରଣ କଲେ ସେହି ତଥ୍ୟ ସଂଗ୍ରହ କରିବାର ଦାୟିତ୍ୱ କେହି ନେଲେ ନାହିଁ ଏବଂ ସେ ପ୍ରକାର କାହାରି ଅପାରଗତା ଓ ଅଯୋଗ୍ୟ ପଣକୁ ଏଡ଼ାଇଦେବା ବାଆଁରେଇ ଦେବା ନିମନ୍ତେ, ବରୁଣର ମନେପଡ଼େ ସେ ହାଇସ୍କୁଲରେ ପଢ଼ିବାଯାଏଁ, ଖବରକାଗଜରେ ଚମକ ସୃଷ୍ଟି କରାଯାଉଥାଏ, 'ସୁଭାଷ ବୋଷ ଏବେ ବି ଜୀବିତ ?' ସମ୍ଭାବନା ଓ କଳ୍ପନା-ଜଳ୍ପନା ଉପରେ ପର୍ଯ୍ୟବସିତ କିଛି କଲମ-ଘୁରୁଘା ଓ ପୁଣି କିଛି କାଳର ନୀରବତା ।

ବରୁଣ ସୁଭାଷଙ୍କ ଚିତ୍ରରେ ଦୃଷ୍ଟିନିବଦ୍ଧ କରିଥିବାରୁ ଜ୍ଞାନ ଦାସ ନୀରବରେ ତାକୁ ଲକ୍ଷ୍ୟ କରୁଥିଲା । ବରୁଣ ସେଠାରୁ ଦୃଷ୍ଟି ଫେରାଇ ଆଣି ପଚାରିଲା : ଆଉ, ତମ ଖବର କଣ ? ବଞ୍ଚିବା ପାଇଁ କିଛି କାମଧନ୍ଦା ଖୋଜୁଛ ନା ଏମିତି ସଫା ଚିକ୍‌କଣ ରହି ଟିଉସନ୍ କରିକରି ଜୀବନଟା ବିତାଇ ଦେବ ?

ଜ୍ଞାନ ଦାସ କହିଲା : ଫେର୍, ଆଉ ମୋ ଖବର କଣ ? ମୁଁ ତ ଏବେ କ୍ରୁହାବୋଲା କର ବନ୍ଧୁମାନଙ୍କଠାରୁ ଦୂରେଇ ଯାଉଛି । ମୁଁ ଲକ୍ଷ୍ୟ କରୁଥିଲି, ନଈର ଧାରପରି ଅନବରତ ମୋର ବନ୍ଧୁମାନେ ବଦଳି ଚାଲିଥିଲେ । ମୁଁ ମଧ୍ୟ ତାହାକୁ ଅଟକାଇବାକୁ ଉଚିତ ମନେ କଲିନାହିଁ । ତାହାକୁ ଗ୍ରହଣ କରିବାରେ ଆପତ୍ତି ନଥିଲା । ଏବେ ମୋ ଭିତରେ ସୁଦ୍ଧା ବାଛବିଚାରର ଭାବ ସୃଷ୍ଟି ହୋଇସାରିଛି । ବରଂ ମତେ ଏକାକୀ ଖୁବ୍ ଭଲ ଲାଗୁଛି । ଏଇନା ଜୀବନର ଆବଶ୍ୟକତା ଉପରେ ଚିନ୍ତା କରୁକରୁ ମତେ ସମସ୍ତ ଅଣ୍ଟୁନ ।

ବରୁଣକୁ ହସ ଲାଗିଲା । ସେ କହିଲା : ତମେ ପ୍ରଶଂସାର୍ହ ଯେ ତମଭଳି ଉଚ୍ଚଶିକ୍ଷିତ ଅନାନ୍ୟ ଯୁବକମାନେ ସିଭିଲ୍ ସର୍ଭିସେସ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ତମେ ଜୀବନର ଅନାବଶ୍ୟକତା ଉପରେ ଚିନ୍ତା କରୁଛ । ଏକଥା କହି ତମେ ବିଶ୍ବାସଭାଜନ ମଧ୍ୟ ହୋଇପାରୁନ । ଯାହାହେଉ, ସ୍ରୋତରେ ଭାସିଯାଇନାହଁ । ସମସ୍ତେ ଯାହା କରୁଛନ୍ତି ସେଥିରୁ ଅଲଗା କିଛି କରୁଛ । ସ୍ରୋତର ପ୍ରତିକୂଳରେ ଯାଉଛ । ତୁମକୁ କେହି ଆଦର୍ଶ ଭାବେ ଗ୍ରହଣ ନକରନ୍ତୁ ପଛେ, ତମର ସାହସ ଅତୁଳନୀୟ । ବହୁତ କଷ୍ଟ କନ୍ତୁ ପାଇବ । ଏପରି କି ତମର ଜୀବିତ ଥିବା ଓ ମୃତ୍ୟୁବରଣ କରିବାରେ କାହାର ଗର୍ବିତ ବା ଦୁଃଖିତ ହେବାଭଳି କିଛି ନ ରହିପାରେ । ତଥାପି କିଛିହେଲେ ତ କର । କିଛି ପ୍ରମାଣ କର । କିଛି ଦର୍ଶାଇଦିଅ । କେବଳ ଚିନ୍ତାରେ ସମୟ ବରବାଦ୍ କରିବା ଅପେକ୍ଷା, ଅନ୍ୟମାନଙ୍କୁ ସେମାନଙ୍କ ବାଟରେ ଛାଡ଼ିଦେଇ, ତମେ ଯାହା ଚାହୁଁଛ ତାହା କରୁନା କାହିଁକି ?

## ତୃତୀୟ କାନ୍ଥ

ଉତ୍ତର ଦିଗର କାନ୍ଥରେ ଲାଗିଥିବା (ମଡ଼ର୍ଣ୍ଣ ?) ଆର୍ଟ ଉପରକୁ ବରୁଣ ତା' ଦୃଷ୍ଟି ଘୁଞ୍ଚାଇନେଲା । କୁହୁଡ଼ି ଭିତରେ ଏକ ବିରାଟ ପ୍ରଶ୍ନ ଚିହ୍ନ । ଜ୍ଞାନ ଦାସ ଥାଏ ଘରିବ । ଅଗତ୍ୟା ବରୁଣ ପ୍ରଶ୍ନ କଲା : ଏହା'ର ଅର୍ଥ କଣ ? କିଏ ଆଙ୍କିଛି ଏ ଚିତ୍ର ?

ଜ୍ଞାନ ଦାସର ନିରାସକ୍ତ, ନିର୍ଲିପ୍ତ ଭାବଭଙ୍ଗୀ । କିଛି ସମୟ ଯାଏଁ ସେ ତା ଓଠ ଦୁଇଟିକୁ ଅମାନ୍ୱୟରେ ଦାନ୍ତରେ କାମୁଡ଼ି ଧରି ଛାଡ଼ିବା ପରେ କହିଲା : ଏଇ ଚିତ୍ରଟିକୁ ମୋର ବନ୍ଧୁ ରାଜୁ ପାତ୍ରୀ ଆଙ୍କିଛି । ସେ ଜଣେ କୁଶଳୀ ଅଭିନେତା ଓ ନିର୍ଦ୍ଦେଶକ । ତମେ ତା'ର ନାଁ ଶୁଣିଥିବ । ଏମ୍.ଏସ୍.ସି. ପରେ ସେ ଚାକିରି ଆଶାରେ ଏଇଠି ତିନିବର୍ଷ କଟାଇ ଦେଲା ଆମପରି ଭୁଙ୍ଗାତିଭୁଙ୍ଗ ବନ୍ଧୁମାନଙ୍କ ଗହଣରେ । ମୋହରେ । ଫସଲ ହିସାବରେ ପାଇଲା, ମାତ୍ର ତିନୋଟି ନାଟକରେ ଅଭିନୟ ଜନିତ ନିନ୍ଦା ପ୍ରଶଂସା ଓ ଏଇ ଆର୍ଟଟି । ସବୁକିଛି ଏଇଠି ହିଁ ଛାଡ଼ିଦେଇ ଗଲା ଓ ଅନେକ ସ୍ମୃତି । ଆଜିକାଲି ସେ ବ୍ରହ୍ମପୁରର ଖଲ୍ଲିକୋଟ କଲେଜରେ ଚାକିରି କରୁଛି । କିନ୍ତୁ ସେ ଏଇ ସହର ଛାଡ଼ିଯିବାକୁ ଚାହୁଁନଥିଲା । ଯାହାକିଛି ଗୋଟେ ଚାକିରି ଏଇଠି ମିଳିଥିଲେ ସେ ରହିଯାଇଥାନ୍ତା । ଏଠାକାର ପରିବେଶ ତା' ଅଭିନୟ କଳାର ଅଭିବୃଦ୍ଧି ଘଟାଇବାରେ ଯଥେଷ୍ଟ ସହାୟକ ହେଉଥାନ୍ତା ବୋଲି ସେ ବିଶ୍ୱାସ ରଖିଥିଲା । ପେଟ ପାଇଁ ଚାକିରି ଓ ବଞ୍ଚିବା ପାଇଁ ଅଭିନୟ କରିଥାନ୍ତା । ଏବେ ସେଇଠି ଯାଇ ଖତ ହେଇଯାଉଛି । ତାର କିନ୍ତୁ ଇଚ୍ଛାଥିଲା ସେ ଫସଲ ହେଇଥାନ୍ତା । ଏବେ ପ୍ରାୟ ଫସିଲ୍ ହେବା ଉପରେ । ସେ ଆଙ୍କିଥିବା ଏଇ ଚିତ୍ରଟିର ଅର୍ଥ ତମେ ପଚାରୁଛ ଯେ, ସବୁ ପ୍ରଶ୍ନର କଣ ଉତ୍ତର ଥାଏ ?

: ତଥାପି, ଆର୍ଟଟିକୁ ବୁଝିବାର ଚେଷ୍ଟା ତ କରାଯାଇପାରେ ! ସମାଧାନ ଚାହୁଁଥିବା ଭଳି ସ୍ୱରରେ ବରୁଣ କହିଲା । ଜ୍ଞାନ ଦାସ ଆଉ ଗୋଟିଏ ସିଗାରେଟ୍ ଧରାଇଲା ଓ ଧୂଆଁ ଛାଡ଼ିଲା । ଜଳନ୍ତା ମ୍ୟାଚସ୍ କାଠିଟିକୁ ଝରକା ସେପଟକୁ ଗଳାଇ ଦେବା ପରେ କହିଲା : ସବୁକଥା ବୁଝିଗଲା ପରେ ନା, ମଣିଷକୁ ଏକଲା ହେଇ ଯିବାକୁ ଲୋଭ ଲାଗେ । ଏତେ ଏକଲା ଯେ ସେଇଠି ଏକଲା· ଶବ୍ଦଟିର ମଧ୍ୟ ଅସ୍ତିତ୍ୱ ନରହିବା ପରି ! ଅଥଚ ଚତୁର୍ଥ ତାଳଗଛ ଚଢ଼ି ଅକସ୍ମାତ୍ ତଳକୁ ଖସିପଡ଼ିବା ଫଳରେ ଦେହ ମୁଣ୍ଡ ଛତୁ ହେଇଯାଇଥିବା ଯନ୍ତ୍ରଣା ଓ ଦୁଃଖବଶତଃ ଅନ୍ଦନ କରୁଥିବା ବିଚରା ତାଳସଜ କଟାଳୀ ସଚେତନ ହେଇଯାଏ ଯେ ସିଏ ସ୍ୱପ୍ନ ହିଁ ଦେଖୁଥିଲା । ତୁମର ଇଚ୍ଛାମାନେ କଣ ଏତିକରେ ସୀମିତ ?

ତମର କଣ ଅନ୍ୟକିଛି କରିବାକୁ ଇଚ୍ଛା ହୁଏନାହିଁ ? ବରୁଣର ଆବେଗମୟ ଜିଜ୍ଞାସା ।

: ହୁଏ । ଜ୍ଞାନ ଦାସର ଖାମ୍‌ଖିଆଲି ଉତ୍ତର ।

: କଣ କରିବାକୁ ? ବରୁଣର ଅନୁସନ୍ଧିତ୍ସା ।

: ଇଚ୍ଛା ହୁଏ ପୃଥିବୀର ଚତୁର୍ଦ୍ଦିଗରେ ମିଳାଇ ଯିବାକୁ । କିନ୍ତୁ ପୃଥିବୀ ସେତେ ପ୍ରଶସ୍ତ ମନେହୁଏ ନାହିଁ । ଯିଗାରେଟ୍ ଟାଣିବା ବାହାନାରେ କିଛି ସମୟ ଅଟକିଯାଇ ଜ୍ଞାନ ଦାସ ଯୋଗ କଲି : ବିକଳ୍ପରେ, କୌଣସି ଯୁବତୀର ହୃଦୟ ଭିତରେ ହଜିଯିବାକୁ ମୋର ମନ ଲୋଡ଼େ; କିନ୍ତୁ କାହାର ହୃଦୟ ସେତେ ଗଭୀର ଥିବା ଜଣାପଡ଼େ ନାହିଁ । ଇଚ୍ଛା ଓ ପ୍ରାପ୍ତି ମଧ୍ୟରେ କେତେ ବ୍ୟବଧାନ ?

## ଚତୁର୍ଥ କାନ୍ଥ

ସାଦା ମାରବଲ୍ । ଏତେ ବେଶୀ ମାରବଲ୍ ବରୁଣର ସହ୍ୟ ହୁଏନାହିଁ । ଦକ୍ଷିଣ କାନ୍ଥରେ ଝୁଲୁଥିବା କାର୍ଲମାର୍କସ୍‌ଙ୍କ ଚିତ୍ରପଟକୁ ଲକ୍ଷ୍ୟ କରି ବରୁଣ ପ୍ରଶ୍ନକଲା : ଏଇଟି କଣ ତମେ ଟାଙ୍ଗିଛ ?

: ନା, ଅନେକ ବର୍ଷ ତଳେ ବାପା କେଉଁଠୁ ସଂଗ୍ରହ କରିଥିଲେ ତ, ରହିଯାଇଛି । ସେ ଥିଲେ ବାପାଙ୍କର ଆରାଧ୍ୟ ।

: ଆରାଧ୍ୟ, ମାନେ ? ଏ ତ ଦେବତା ନୁହନ୍ତି ।

: ଦେବତା ଆଉ କାହାକୁ କୁହାଯାଏ ? ପଥର ଦେଉଳରେ ପଥରକୁ ପୂଜାକରି ବ୍ରାହ୍ମଣମାନେ ବଞ୍ଚିଯାଇ ପାରନ୍ତି । ସେମିତି ଏହାଙ୍କ ନାଁରେ ମୋ ବାପା କିଛି ରୋଜଗାର କରୁଥିଲେ । କିଛି କାହିଁକି, ବେଶ୍ ଭଲ ରୋଜଗାର ଥିଲା ତାଙ୍କର ।

: ଏହାଙ୍କ ପ୍ରତି ତୁମର କଣ କିଛି ପ୍ରତିବଦ୍ଧତା ନାହିଁ ?

ଅଛି । ଏ ମହାତ୍ମାଙ୍କ ନାଁ ତ ଆଉ ବନ୍ଦୀଯୋଗ୍ୟ ହୋଇ ରହିନାହିଁ । ମୁଁ ମଧ୍ୟ ବିଶ୍ୱାସ କରେ, ସେ’ ବହୁତ ପୁରୁଣା ହୋଇ-ଗଲେଣି ।

: ପୁରୁଣା ହୋଇଗଲେଣି ମାନେ ? ବରୁଣର ବିସ୍ମୟପୂର୍ଣ୍ଣ ଜିଜ୍ଞାସା ।

ଏଥର ଈଷତ୍ ଶୁଷ୍କ ହସ ପରେ ଜ୍ଞାନ ଦାସ କହିଲ : ମାନେ ଆଉ କଣ ? ପୁରୁଣା ହୋଇଯିବା କଣ ନୂଆ କଥା କି ? ଖଦଡ଼ ପିନ୍ଧୁଥିବା ପ୍ରତ୍ୟେକ ଲୋକ ଯଦି ଗାନ୍ଧୀ ମହାତ୍ମା ପାଲଟି ଯାଆନ୍ତି ତେବେ ପୁରୁଣା ଗାନ୍ଧିଜୀଙ୍କୁ ପୁରୁଣା ଗାନ୍ଧିଜୀ ନ କହିଲେ ଆଉ ଚିହ୍ନିବାର ଉପାୟ କାହିଁ ?



# କାର୍ତ୍ତିକ ପୂର୍ଣ୍ଣିମା : ଜନୈକ ଚଉଦ

## ଶୈଶବ

ଘରେ, ଛୋଟ ପିଲାଟିଏ ଯଦି କୌଣସି ଅଝଟ କରେ ବା କିଛି ଗୋଟେ ଜିଦ୍ ଧରି ବସେ, ଆପଣ ତାକୁ ଦବେଇ ଦିଅନ୍ତି ନାହିଁ ? ଯଦି ବା ଦବେଇ ନ ହେଲା, ହଁ ମାରି ଦେଇ, ପରେ ଅସଲ ସମୟରେ ଭଣ୍ଡେଇ ଦିଅନ୍ତି ନାହିଁ ? ମୁଁ ଯେଉଁ ସମୟର କଥା, ମାନେ ମୋ ଶୈଶବ କାଳର କଥା କହୁଛି, ସେତେବେଳେ ତ ଶିଶୁ ମନସ୍ତତ୍ତ୍ୱ ଉପରେ ଆଜି ଭଳି ଏତେ ବଗୁର ଆଲୋଚନା ହେଉ ନଥିଲା ଓ ସେଥିରେ ପୁଣି ଆମେ ରହୁଥିଲୁ ଗାଁରେ । ମତେ ଏମିତି ମୋର ଶୈଶବରେ ବାରମ୍ବାର ବେଶ୍ ଦବେଇ ଦିଆଯାଇଛି ଅଥବା ଭଣ୍ଡେଇ ଦିଆଯାଇଛି । ଏଇ ଯେମିତି ଧରନ୍ତୁ, ବଟକରି କଥା ।

ବାପା ବାହାରେ ଚାକିରି କରୁଥିଲେ । ବର୍ଷରେ ଥରେ, ଦୁଇଥର ଗାଁକୁ ଆସୁଥିଲେ । ଏକାନ୍ନବର୍ତ୍ତୀ ପରିବାର । ଘରେ ଗୁରୁଜନଙ୍କର ଅଭାବ ନଥିଲା । କିନ୍ତୁ ମୋ କଥାକୁ କେହି କର୍ଣ୍ଣପାତ ସୁଦ୍ଧା କଲେ ନାହିଁ । କଥା କଣ କି, ଆମକୁ ସ୍କୁଲରେ ସଦ୍ୟ ଓଜନ ଓ ମାପ ବିଷୟରେ ପଢ଼ାଯାଇଥିଲା ଓ ସେ ପ୍ରକାର ଗଣିତ ସବୁ କରିବାକୁ ଦିଆଯାଇଥିଲା । ମୋର ଫୁଟବଟା (ସ୍କେଲକୁ ଆମେ ଫୁଟବଟା କହୁଥିଲୁ) ନଥିଲା । କେବଳ ମୋର କାହିଁକି, ଆମ ସ୍କୁଲରେ ପଢ଼ୁଥିବା କୌଣସି ପିଲାର ବି ନଥିଲା । ତେବେ ହାଇସ୍କୁଲରେ ପଢ଼ୁଥିବା ପିଲାଙ୍କଠାରୁ ଫୁଟବଟା ଓ ଆମର ନୂଆ ଘର ତିଆରି ହଉଥିବାରୁ କଣା ହୋଇ

ଆସିଥିବା ମାପ ଫିତା ଦେଖି ମୁଁ ଜାଣିପାରିଲି ଦୂରତା, ଲମ୍ବ, ପ୍ରସ୍ଥ, ଉଚ୍ଚତା କିପରି ମପାଯାଏ କିନ୍ତୁ ଲିଟର ଓ ଗ୍ରାମ୍‌ରେ କିପରି ମପାଯାଏ ଏବଂ ଓଜନ କରାଯାଏ ? ଆମ ଗାଁରେ ଅବଶ୍ୟ ଦୁଇଟି ଦୋକାନ ଥିଲା । ଗୋଟିଏ ଡାଉଁର । ସେ ଜଣେ ବୁଢ଼ା ଲୋକ । ଅନ୍ୟଟି ଦୁଃଖୀର । ସେ ଜଣେ ବିଧବା ବୁଢ଼ୀ । ସେମାନଙ୍କ ପାଖରେ ବଟକରା କି ଲିଟର ନଥିଲା । ଦୁହେଁ ପଇସା ଅନୁସାରେ ଜିନିଷ ଦେଉଥିଲେ । ଦଶ ପଇସାର ଲୁଣ, ଗୁରଣାର ତେଲ, ଆଠଣାର ଚୁଡ଼ା ଏଇଭଳି । ଶେଷରେ ବୋଉକୁ କହିଲି, ମୁଁ ଶେରଗଡ଼ ଯାଇ ବଟକରା ଦେଖି ଆସିବି । ବୋଉ କହିଲା, ତତେ କିଏ ଶେରଗଡ଼ ନବ ? ତୁ ଏବେ ଗଣିତ ଗୁଡ଼ାକ କଷି ଦେଇଥା’ । ବାପା ଆସିଲେ ଶେରଗଡ଼ ନେଇ ବଟକରା ଦେଖେଇ ଆଣିବେ । କିଛିଦିନ ପରେ ବାପା ଆସିଲେ । ଗାଁକୁ ଆସିଲେ ସେ ପ୍ରାୟ ପ୍ରତିଦିନ ପାନ, ସିଗାରେଟ ପାଇଁ ଶେରଗଡ଼ ଯାଆନ୍ତି । ମୁଁ ଜିଦ୍ ଧରିଲି ତାଙ୍କ ସାଙ୍ଗରେ ବଟକରା ଦେଖିବାକୁ ଯିବି । ବାପା କହିଲେ, ଏକ କିଲୋଗ୍ରାମରେ ହଜାରେ ଗ୍ରାମ୍ ବୋଲି ଜାଣିଲେ ତ ଗଲା; ବଟକରା ନ ଦେଖିଲେ ହେଉନି ? ପିଲା ଦିନରୁ ହିଁ ମୁଁ ଟିକିଏ ଓଲିଆରୁ ଗଳା ପ୍ରାୟେ କୁହାକିଆ । କହୁ କହୁ କହି ଦେଲି, ମୋ ବାପା ଜଣେ ଚନ୍ଦା ଲୋକ ବୋଲି ଜାଣିଲେ ତ ଗଲା; ବାପାଙ୍କୁ ନ ଦେଖିଲେ ହେଉନି ? ବାପା ଏପରି ଏକ ଅତର୍କିତ ଚଟକଣି ଦେଲେ ମୋ ଗାଲରେ ଯେ ମୋର ଆଖି ବୁଜି ହେଇଯାଇ ମତେ ଜୁଳୁଜୁଳିଆ ପୋକ ଦେଖା-ଗଲେ । ବାପା କହିଲେ, ବଦ୍‌ମାସ । କିଛି ସମୟ ପରେ କହିଲେ, ପାଠ ପଢ଼ି ଶିକ୍ଷାଗୁରୁ ଶିଖିବ କଣ, ବଟକରା ଦେଖିବ କହୁଚ । ଯା’ ଭାଗ ଏଇଠୁ !

ତେବେ ସେସବୁ ତ ବହୁତ ପରର କଥା । ବାଲ୍ୟ କାଳରେ, ଏଇଭଳି ପ୍ରଥମ ସ୍ମରଣୀୟ ଘଟଣାଟି ଘଟିଥିଲା ତା’ର ବହୁ ପୂର୍ବରୁ । ଘଟଣାଟି, ମୋ ପାଇଁ, ଅବଶ୍ୟ ଥିଲା ଅତ୍ୟନ୍ତ ମର୍ମନ୍ତୁଦ । ତା’ ନ ହେଲେ ସେଇ ସୁଦୂର ବାଲ୍ୟ କାଳରୁ ଘଟଣାଟି କଦାପି ଏ ଯାଏ ମୋର ମନେ ରହି ନଥାନ୍ତା । ଘଟଣାଟି ଯେଉଁଦିନ ଘଟିଥିଲା, ସେଦିନ ଥିଲା କାର୍ତ୍ତିକ ପୂର୍ଣ୍ଣିମା ।

ପୂର୍ବଦିନ ସନ୍ଧ୍ୟାରେ ସାନ ଦଦେଇ (କେଜାଣି ଆଜ ସେ କେଉଁ ପୁରରେ !) କେଉଁଠୁ ସଂଗ୍ରହ କରି ଆଣିଥିଲେ କେତେଗୁଡ଼ିଏ କଦଳୀ ବାଟୁକା । ମୁଁ ସେଥର ପ୍ରଥମ କରି ଜାଣିଲି ଯେ କାର୍ତ୍ତିକ ପୂର୍ଣ୍ଣିମୀ ଗୋଟିଏ ଭାରି ମଉଜଆ ପର୍ବ । ରାତି ପାହିଲେ ପୂର୍ଣ୍ଣିମୀ । ଅନ୍ଧାର ଥିବ, ସମସ୍ତେ ଉଠିବେ । କଦଳୀ ବାଟୁକାରେ ବୋଇତ ତିଆରି ହୋଇ ସାରିଛି । ବୋଇତ ମଝିରେ ଖଡ଼ିକା ପୋତାଯାଇ ଖଡ଼ିକାର ଅଗରେ ଘିଅ ବୋଳା ଧଳା କନା ବନ୍ଧାଯାଇ ସାରିଛି । ପାହାନ୍ତିଆରୁ ବୋଉ ହେଉରିକା ଗାଁ ପୋଖରୀକୁ ଯିବେ । ଘିଅ ବୋଳା କନାରେ ନିଆଁ ଲଗାଇ ବୋଇତଗୁଡ଼ିକୁ ପୋଖରୀରେ ଭସାଇବେ । ମୋତେ ସେମାନେ ସାଙ୍ଗରେ ନେବେନାହିଁ ବୋଲି କହିଲେ । କହିଲେ, ପିଲାମାନେ ନ ଗଲେ ଚଳିବ । ମୁଁ ଜିଦ୍ ଧରିଲି । ବୋଉ ଓ ଜେଠେଇମାନେ ପ୍ରତିଶ୍ରୁତି ଦେଲେ, ହଉ, ତୁ ଏବେ ଶୋଇପଡ଼ । ଆମେ ତୋତେ ପାହାନ୍ତିଆ ବେଳକୁ ଉଠାଇବୁ । ଅଥଚ ମୋର ନିଦ ଭାଙ୍ଗିବା ମାତ୍ରେ, ଅନ୍ଧାରରେ ଅଣ୍ଡାଳି ଜାଣିପାରିଲି ମୋ ବୋଉ ପାଖରେ ନାହିଁ । ମତେ ଠକି ଦିଆ ଯାଇଛି । ମୁଁ କାନ୍ଦିବା ଆରମ୍ଭ କରିଦେଲି । ପାଖ ବଖରାରୁ କାକାଭାଇନା ଉଠି ଆସିଲେ । ମତେ ବୁଝେଇଲେ, ବୁଝେଇଲେ; ମୁଁ ଚୁପ ନ ହେବାରୁ ମତେ ଶୂନ୍ୟେ ଶୂନ୍ୟେ ଦୁଇ ହାତରେ ଟେକି ନେଇ, ଅନ୍ୟମାନଙ୍କ ବାରଣ ନ ମାନି ଗାଁ ପୋଖରୀରେ ଟୁବ୍ କରା ବୁଡ଼େଇ ଦେଲେ ।

ତା'ପରେ ମୋର ମନର ଅବସ୍ଥା କଣ ହୋଇଥିବ ଏବେ ଅନୁମାନ କରି ହେଉଛି । କିନ୍ତୁ ପ୍ରକୃତରେ କଣ ହୋଇଥିଲା, ତାହା [illegible] ମନେ ନାହିଁ । ତେବେ କାର୍ତ୍ତିକ ପୂର୍ଣ୍ଣିମୀର ସଂସ୍କୃତି ଓ ଅନୁଭୂତି [illegible] ମୋର ସେପରି ଭାବରେ ପରିଚୟ ହୋଇଥିଲା । ତା' ପରଠାରୁ [illegible]ଣ୍ୟ ମୁଁ ଗାଁ ସ୍କୁଲର ପଢ଼ା ଶେଷକରି ବ୍ରହ୍ମପୁର ଚାଲିଯିବା ପର୍ଯ୍ୟନ୍ତ [illegible] କାର୍ତ୍ତିକ ପୂର୍ଣ୍ଣିମୀରେ ବୋଉ ମତେ ପାହାନ୍ତିଅରୁ ଉଠେଇ ଦେଉଥିଲା ଓ ବୋଇତ ଧରି ଆମେ ଗାଁ ପୋଖରୀକୁ ଯାଉଥିଲୁ ।

ମୋର ଏବେ ମନେହୁଏ, ବିନା କଷ୍ଟ, ବିନା ଯନ୍ତ୍ରଣାରେ କେଉଁ [illegible] କେଉଁଠି [illegible] କିଛି ହାସଲ କରିପାରିଛି ? ଯଦି କରିଥାଏ, ତାହା କଦାପି ସ୍ମରଣୀୟ ?

## କୈଶୋର :

ଘରର ପିଲାଟିଏ ଯଦି ବାଳୁଙ୍ଗାମୀ କରେ ବା ଛତରା ପାଲଟି ଯାଏ, ସବୁ ଦୋଷ କେବଳ ତା'ର ବୋଲି ତେଙ୍ଗୁରା ପିଟି ତାକୁ ଭର୍ତ୍ସନା କରିବା ବଦଳରେ ଆପଣ ତାର ମାନସିକ ଅବସ୍ଥା, ଗତି ବିଧି ଓ ସାଙ୍ଗସାଥିମାନଙ୍କ ସମ୍ପର୍କରେ ଅନୁଧ୍ୟାନ ଏବଂ ତଥ୍ୟ ସଂଗ୍ରହରେ ଲାଗିପଡ଼ନ୍ତି କି ? ସେ ଭୁଲ କଥା । ଆପଣଙ୍କୁ ଏତେ ସମୟ କୁଆଡ଼ୁ ମିଳେ ? ଯଦି ବା ମିଳେ, ବହୁ ମୂଲ୍ୟ ସମୟର ଏପରି ଅପଚୟ କରିବା କଣ ଠିକ୍ ? ଆପଣ ଛୁଆ ଯେତେ ଇଚ୍ଛା ସେତେ ଜନ୍ମ କରିପାରନ୍ତି; କିନ୍ତୁ ସେମାନଙ୍କୁ ଭାଗ୍ୟ ତ ଦେଇ ପାରିବେ ନାହିଁ । ଗୁଣ ବା ଚରିତ୍ର ଖଞ୍ଜି ଦେଇ ପାରିବେ ନାହିଁ ସେମାନଙ୍କଠାରେ । କିଏ ଜୀବନରେ କଣ ହେବ ତାହା କଣ କେହି ବି କହି ଦେଇ ପାରିବ ? ତା ହେଲେ ଡାକ୍ତର ହେବାକୁ ଚାହୁଁଥିବା ପିଲାଟିକୁ ଆପଣ ଡାକ୍ତର କରିବାକୁ ଲାଗିପଡ଼ିବେ କାହିଁକି ? କୌଣସି ଢଗରେ ସେ ହାସଲ କରିବାକୁ ଚେଷ୍ଟା କରୁଥିବା ବିବିଧ ଅନୁଭୂତିରୁ ତାକୁ ନିବୃତ୍ତ କି ବଞ୍ଚିତ କରିବା କଣ ଉଚିତ୍ ହେବ ?

ମୋର ଗୁରୁଜନମାନେ କେତେ ଭଲ, ମୋର କୌଣସି ଇଚ୍ଛା ଆଗରେ ବି କେବେ ଅନ୍ତରାୟ ହୋଇ ଠିଆ ହେଲେ ନାହିଁ । ସେହି ସ୍ୱାଧୀନତା ବଳରେ ବ୍ରହ୍ମପୁର ଯାଇ ପଢ଼ିବା ପରେ ଅଷ୍ଟମ ଶ୍ରେଣୀରେ ପହଞ୍ଚିବା ବେଳକୁ, ନିଜ ନିଜ ପିଲାଙ୍କର ସୁନ୍ଦର ଭବିଷ୍ୟତ କାମନା କରୁଥିବା ଆମ ସାହିର ଗୁରୁଜନମାନଙ୍କୁ ମୁଁ ଆତଙ୍କିତ କରିଦେଇ ପାରିଥିଲି । ମୋ ସାଙ୍ଗରେ ପିଲାମାନେ ଯେମିତି ନ ମିଶନ୍ତି ସେଥିପାଇଁ ଗୁରୁଜନମାନେ ସେମାନଙ୍କୁ କଡ଼ା ନିର୍ଦ୍ଦେଶ ଦେଉଥିଲେ । ମଧ୍ୟ ସତର୍କ ରହୁଥିଲେ । ଯେ କୌଣସି ବାରଣକୁ ଯଦି ସମସ୍ତେ ବିନା ଦ୍ୱିଧା ଓ ପରମ ଆଗ୍ରହରେ ମାନି ନେଇଥାନ୍ତେ ତେବେ ପୃଥିବୀ ସାରା ଲୋକେ ରାମ ରାଜ୍ୟରେ ବାସ କରୁଥାନ୍ତେ ଅଥବା କେବେ ବି କେଉଁଠି ଆଉ କିଛି ନୂତନତା ଅନୁଭୂତ ହୁଅନ୍ତା ନାହିଁ । ନୂଆ କିଛି ଘଟନ୍ତା ହିଁ ନାହିଁ, ସବୁ କିଛି ଶଗଡ଼ ଗୁଳାରେ ଗଲନ୍ତା ଏବଂ ରାମ ରାଜ୍ୟ ମିଳିଥିବା ପର୍ଯ୍ୟନ୍ତ କୃଷ୍ଣର କଳ୍ପନା ଅବଶ୍ୟ ଅସମ୍ଭବ ହୁଅନ୍ତା । ଏକଥା ମୁଁ କେଉଁକାଳୁ

ଜାଣିଛୁ ଓ ଦୃଢ଼ ଭାବେ ବିଶ୍ୱାସ ମଧ୍ୟ କରୁଛୁ । ତା' ନହେଲେ ଗୁରୁଜନଙ୍କ ନାଲି ଆଖି ଓ ପାଚିଲା ବେତକୁ ଖାତିର ନ କରି ସେତେବେଳେ ମୋର ବା କିପରି ଏତେସଂଖ୍ୟକ ବନ୍ଧୁ ସୃଷ୍ଟି ହୋଇ ପାରିଥାନ୍ତେ ? ବରଂ ସେତେବେଳେ ଭଲ ପିଲାଙ୍କର ବନ୍ଧୁ ଥିଲେ ଜଣେ ବା ଦୁଇଜଣ ଓ ମୋର ବନ୍ଧୁ କିଏ ବା ନ ଥିଲା ତେବେ ? ମୋର ବନ୍ଧୁମାନଙ୍କ ମଧ୍ୟରୁ ଯେଉଁ ଚାରିଜଣ ଅତି ଅନ୍ତରଙ୍ଗ ଥିଲେ; ସେମାନେ ହେଲେ, ବାବାଜୀ, ଆଜିକାଲି ସେ ଓ.ଆର.ଟି. ବସ୍‌ରେ କ୍ଲିନର ନାରାୟଣ, ଗୋଟିଏ ଘରୋଇ ବସ୍‌ର ଡ୍ରାଇଭର ଅଛି, ଏଇନା କୃଷ୍ଣମୂର୍ତ୍ତି, ଫାର୍ମାରମ୍ୟାନ ଚାକିରି କରୁଛି ଏବେ ଓ ଅଛି କୋରାପୁଟରେ ଏବଂ ଭବାନୀ ଶଙ୍କର । ତେବେ ସବୁଠୁ ମଜା ଓ ଆଶ୍ଚର୍ଯ୍ୟର କଥା, ମୋଭଳି ଗୋଟେ ପିଲାକୁ ବି ମୋର ଗୁରୁଜନ ବାରଣ କରୁଥିଲେ, ବୁଝାଇବା ଢଙ୍ଗରେ, ସେ ଛତରା ପିଲାଙ୍କ ସାଙ୍ଗରେ ନ ମିଶିବା ପାଇଁ ।

ବ୍ରହ୍ମପୁରରେ ମୋର ଗୁରୁଜନ ଥିଲେ ମୋ ଦଦେଇ । ଜଣେ ମାତ୍ର । ମୁଁ ତାଙ୍କର ପାଖରେ ରହି ପଢ଼ୁଥିଲି । ଘରେ ଅନ୍ୟ କେହି ନ ଥିବାରୁ ମୋର ସ୍ୱାଧୀନତା ଥିଲା ଅଖଣ୍ଡ । ମା ଓ ଗାଁକୁ ଛାଡ଼ି ତାଙ୍କ ପାଖରେ ରହୁଥିବାରୁ ଏବଂ କେବେ ବି ବାପା, ବୋଉ ବା ଗାଁ କଥା ମନେ ପକାଇ ମନମାରି ରହୁ ନ ଥିବାରୁ ଦଦେଇ ମତେ କିଛି ବି କଡ଼ା କଥା କହୁ ନ ଥିଲେ । ବ୍ରହ୍ମପୁରରେ ପହଞ୍ଚିବା ପରେ ପରେ ବାବାଜୀ, ନାରାୟଣ ଓଗେର ବନ୍ଧୁମାନଙ୍କୁ ପାଇ ମୋର ବା ଆଉ କାହା କଥା ମନେ ପକାଇବା କଣ ଦରକାର ଥିଲା ?

ପାଖାପାଖି ତିନି ବର୍ଷ ମଧ୍ୟରେ ଆମମାନଙ୍କ ବାଲ୍ୟଗାମୀର ବିବରଣୀ, ବିସ୍ତୃତ ଭାବେ ଲେଖିପାରିଲେ, 'ମାଟି ମଟାଳ'ଠାରୁ ବଡ଼ ଉପନ୍ୟାସଟିଏ ହୁଅନ୍ତା । ଅନେକ ସ୍ମରଣୀୟ ଘଟଣା ମଧ୍ୟରୁ କାର୍ତ୍ତିକ ପୂର୍ଣ୍ଣିମାର ସ୍ମୃତି ମୋ ପାଇଁ ଏବେ ବି ଖୁବ୍ ମୂଲ୍ୟବାନ । ଯାହା ଆମେ କରିଛୁ, ତାହା ଏବେ ଭାବିଲେ ବିଶ୍ୱାସ କରି ହୁଏନାହିଁ । ଜୀବନରେ କାଳେ ଜଣେ ବଡ଼ ଲୋକ ପାଲଟିଯିବି ଓ ତା'ପରେ ଏସବୁ କଥା କହିବା ବଦଳରେ ଘୋଡ଼େଇ ଦେବାକୁ ଇଚ୍ଛା ହେବ ବୋଲି ମନରେ ଆଶଙ୍କା ଉଙ୍କିମୁକି ଥିବାରୁ ଏବେ କହିବାକୁ ମନ ବ୍ୟାକୁଳ ହେଉଛି ।

ଶୁଣିଲେ ଆପଣ ଖରାପ ଭାବିବେ ନାହିଁ ? ଏ ଯେ ଏତେ ବାଜେ ସ୍ତରର ପିଲାଙ୍କ କଥା । କିନ୍ତୁ ଆମେମାନେ ସିନା କିଛି ହେବାପାଇଁ ନାହିଁ ଏ ଯାଏଁ, ଆମର ବୁଢ଼ା ବାହୁଙ୍ଗା ବନ୍ଧୁ ଭବାନୀଶଙ୍କର ଏବେ ଜଣେ ଏମ୍.ଏଲ୍.ଏ. ହୋଇ ପାରିଛନ୍ତି । ଅଥଚ ଯାବତୀୟ ବାଜେ କାମ ପାଇଁ ସେ ହିଁ ସେତେବେଳେ ଆମର ନେତୃତ୍ୱ ନେଉଥିଲେ । ଆମ ମନରୁ ଭୟ ଛଡ଼ାଇବା ପାଇଁ ପ୍ରଥମେ ଲମ୍ଫ ମାରୁଥିଲେ ।

ହଁ, ଆମେ ଲମ୍ଫ ମାରୁଥିଲୁ ରାମ ଲିଙ୍ଗେଶ୍ୱର ବନ୍ଧର ପାଣି ଉପରକୁ; କାର୍ତ୍ତିକ ପୂର୍ଣ୍ଣିମାର ପାହାନ୍ତିଆରେ । ସେ ବନ୍ଧଟି ବହୁତ ବଡ଼, ଗୋଟିଏ ଛୋଟ ହ୍ରଦ ପରି । ତାହା ହୁଏତ କାରଣ, ସେଇ ବନ୍ଧକୁ ସାମନା କରି ନିର୍ମାଣ କରାଯାଇଥିବା ଏକ ଲଜ୍‌ର ନାଁ ଲେକ୍ ଭିଉ ଲଜ୍ ରଖାଯିବାର ।

କାର୍ତ୍ତିକ ପୂର୍ଣ୍ଣିମା ଦିନ ଅନ୍ଧାର ଥାଉ ଥାଉ ଆମେ ପୂର୍ଣ୍ଣିମା ସ୍ନାନ କରିବାର ବାହାନାରେ ଘରୁ ବାହାରି ଉଦାହକା ହୋଇ ରାମ ଲିଙ୍ଗେଶ୍ୱର ବନ୍ଧ ପାଖକୁ ଚାଲି ଯାଉଥିଲୁ । ସ୍ନାନ କରି ବୋଇତ ଭସାଇବା ପାଇଁ ଲୋକମାନେ ଆସି ଜମା ହେଉଥିଲେ । ଯେଉଁ ଘାଟରେ ବେଶୀ ଭିଡ଼, ଆମେ ସେଇ ଘାଟ ପାଖକୁ ଚାଲି ଯାଉଥିଲୁ । ଅପେକ୍ଷା କରୁଥିଲୁ । ବୋଇତ ଭସାଳୀମାନେ ଗୋଟିଏ ଖଡ଼ିକାର ଅଗ୍ର ଭାଗରେ ଘିଅ ବୋଳା ଧଳା କନା ଗୁଡ଼ାଇ ଖଡ଼ିକାକୁ ବୋଇତରେ ଖୁଞ୍ଚିଦେବା ପରେ କନାଟିରେ ନିଆଁ ଧରାଉଥିଲେ । ତା'ପରେ ବୋଇତରେ କିଛି ଖୁଚୁରା ପଇସା ପକାଇ ବୋଇତଟିକୁ ଟିକିଏ ଠେଲି ଦେଉଥିଲେ ପାଣି ଉପରେ । ବାସ୍, ତାହାହିଁ ଥିଲା ଆମମାନଙ୍କ ପାଇଁ ଚରମ ମୂହୂର୍ତ୍ତ । ଭୋଜି ହେଉଥିବା ଜାଗାରେ ଆକଥାକ କରି ଫୋପାଡ଼ା ଯାଉଥିବା ଅଇଁଠା ପତ୍ର ଉପରକୁ କୁଦି ପଡ଼ୁଥିବା କୁକୁରଙ୍କ ଭଳି ଆମେ ସଦ୍ୟ ଭସା ଯାଇଥିବା ବୋଇତ ଉପରକୁ ଲମ୍ଫ ମାରୁଥିଲୁ ଖୁଚୁରା ପଇସାତକ ହାସଲ କରିବାର ପ୍ରବଳ ଲାଳସାରେ । ମଧ୍ୟ ଗାଳି ଶୁଣୁଥିଲୁ ଲୋକଙ୍କ-ଠାରୁ । କେବଳ ଆମେ ତ ନୁହଁ ଅସଂଖ୍ୟ ପିଲା ସେଥିପାଇଁ ଜଗି ରହୁଥିଲେ । ଅନ୍ୟ ଦଳର ପିଲାଙ୍କ ସହ ଆମର ଝଗଡ଼ା ବି ହେଉଥିଲା । କାର୍ତ୍ତିକ

ପୂର୍ଣ୍ଣିମୀ ଦିନ ସକାଳର ଶୋ'କରାରଙ୍କୁ ଏକତ୍ରିତ କରି ଆଠଣିକିଆ ଟିକେଟରେ ଆମେ ମ୍ୟାଟିନୀ ଶୋ' ସିନେମା ଦେଖୁଥିଲୁ । ସିଗାରେଟ ମଧ୍ୟ ଟାଣୁଥିଲୁ । ଏମିତିକା ପିଲାଙ୍କ ସହ ଭଲ ପିଲା ମିଶିବା ଉଚିତ୍ ?

## ତାରୁଣ୍ୟ :

ଅଠର ବର୍ଷ ବୟସରେ କେହି ଯଦି କୌଣସି ଝିଅକୁ ପ୍ରେମ କରି ବସେ, ତା' ଜୀବନରେ ଅନ୍ୟ କିଛି ମହାନ୍ ଲକ୍ଷ୍ୟ ଥାଇପାରେ ବୋଲି ଆପଣ ଆଉ ବିଶ୍ବାସ କରିବେ ? ଟିନ୍ ଏଜ-ଲଭ୍ କ'ଣ କେବଳ ସିନେମା ଭିତରେ ସୀମିତ ତା'ହେଲେ ? ଅଠର ବର୍ଷ ବୟସ ବେଳକୁ ମୁଁ ପ୍ରାୟ ଶହେଅଣୀ ସିନେମା ଦେଖି ସାରିଥିଲି ଓ ପ୍ରେମ ଏବଂ ପ୍ରେମିକା ପାଇଁ ପ୍ରାଣପାତ କରି ଦେଉଥିବା ନାୟକମାନେ ଥିଲେ ମୋର ଆଦର୍ଶ । ମୁଁ ତ ଏବେ ବି ଦୃଢ଼ ଭାବେ ବିଶ୍ବାସ କରୁଛି, ମଣିଷ ପାଇଁ କେବଳ ମାତ୍ର ଆବଶ୍ୟକ ପ୍ରେମ କରିବା ଓ ଭୋଟ ଦେବା ଅଧିକାର । ଏ ଦୁଇଟି ଅଧିକାର ପାଇଗଲେ ତେଣିକି ଜଣେ ବିନା ଖାଦ୍ୟ, ବିନା ବସ୍ତ୍ର, ବିନା ବାସଗୃହରେ ବି ଚଳିଯାଇ ପାରିବ ଓ ସେସବୁ ଆଉ ମିଳୁନି ବୋଲି ଗାଲରେ ହାତ ଦେବା କି ମୁଣ୍ଡ କୋଡ଼ିବା ଦରକାର ପଡ଼ିବ ନାହିଁ । ପ୍ରେମରେ ପଡ଼ି ସେ ଜଙ୍ଗଲକୁ ଚାଲି ଯାଇପାରିବ ଯେଉଁଠି ଖାଇବା ପାଇଁ ଫଳମୂଳ ତ ମିଳି ହିଁ ଯିବ, ବସ୍ତ୍ର ଓ ବାସଗୃହ ଦରକାର ହେବନାହିଁ ଏବଂ ସେଠାରେ ପ୍ରେମରେ ବଞ୍ଚି ରହି ମଝି ମଝିରେ, ସମୟ ହେଲେ ଆସି ଭୋଟ ଖଣ୍ଡିକ ନିର୍ଦ୍ଧାରିତ ବାକ୍ସରେ ଗଳେଇ ଦେବା ପରେ ଚୁପ୍‌ଚାପ୍ ପୁଣି ଥରେ ସେଇ ଜଙ୍ଗଲକୁ ଫେରିଯିବ । ଏବେ ତ ଅଠର ବର୍ଷରେ ଭୋଟ ଦେବାର ଅଧିକାର ସମସ୍ତଙ୍କୁ ମିଳିଗଲାଣି । ସେବେ ନଥିଲା । ତେବେ ମୁଁ ଅଠର ବର୍ଷ ପୂରିବା ପରେ, ସୁଭଦ୍ରାକୁ ଭଲ ପାଇବା ଆରମ୍ଭ କରି ଦେଇଥିଲି । ଆମ ଦୁହିଁଙ୍କ ମଧ୍ୟରେ ସମ୍ପର୍କର ଅଙ୍କୁରୋଦ୍‌ଗମ୍ ସହିତ ମଧ୍ୟ ଗୋଟିଏ କାର୍ତ୍ତିକ ପୂର୍ଣ୍ଣିମୀ ଜଡ଼ିତ । କାର୍ତ୍ତିକ ପୂର୍ଣ୍ଣିମୀ ଓ ସରଳାଠାରେ ମୁଁ କୃତଜ୍ଞ ।.

ସରଳା, ମୋର ଜଣେ ଦୂର ସମ୍ପର୍କୀୟଙ୍କ ଝିଅ । ମୋର ସମ୍ପର୍କୀୟ ବ୍ୟକ୍ତି ଜଣେ ନାମକରା କବିରାଜ । ମୋ ବୋଉ ପାଇଁ ଔଷ

ଆଣିବାକୁ ମୁଁ ତାଙ୍କ ପାଖକୁ ଯାଇଥିଲି । ସେଦିନ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ।

ରାତିରେ ଖାଇ ଦେଇ ଶୋଇପଡ଼ିଲି । ଯେତେବେଳେ କେହି ମୋର ଡାହାଣ କାନ୍ଧକୁ ହଲାଉଥିବା ଅନୁଭବ କରି ଆଖି ଖୋଲିଲି ଘଣ୍ଟା ସାରା ବଜୁଳୀ ବତୀର ଆଲୁଅରେ ଗାଧୋଉଥିଲି । ସରଳା ପ୍ରଶ୍ନ କଲା : ଗାଧୋଇବାକୁ ଯିବ ନାହିଁ କି ?

: ଏ ଅନ୍ଧାର ଥାଉ ଥାଉ ? ମୁଁ ପ୍ରଶ୍ନ କଲି ।

ସରଳା, ସରଳ ଭାବେ ହସି, କହିଲା : ଆଜି ତ କାର୍ତ୍ତିକ ପୂର୍ଣ୍ଣିମୀ, ଜାଣି ନାହଁ କି ? ସମସ୍ତେ ପଳେଇ ଗଲେଣି । ତମେ ବି ଚାଲ । ଗାଧୋଇବ । ବୋଇତ ମଧ ଭସେଇବ । ମୁଁ ତମ ପାଇଁ ଦି'ଟା ବଡ଼ ବୋଇତ ସଜେଇ ରଖି ଦେଇଛି ।

ମୁଣ୍ଡ ଉଠାଇ ସରଳାର କଥା ଶୁଣୁଶୁଣୁ ମତେ ଲାଗିଲା ଯେମିତି କି ଦୁଆର ମୁହଁ ସେପଟେ, ବାରଣ୍ଡାରେ, କିଏ ଜଣେ ଠିଆ ହେଇଚି । ପଚାରିଲି ସରଳାକୁ : ସେପଟେ କିଏ ?

ସରଳା ସେପଟକୁ ଅନେଇ କିଶୋରୀ ସୁଲଭ ହସଟିଏ ହସୁ ହସୁ ପାଟିରେ ହାତ ଦେଇ ଚୁପ୍ ରହିଲା । ମୁଁ ଉଠିଲି ଓ ଆଉ ପାଖକୁ ଆସି ଦେଖିଲି ଝିଅଟିଏ ଦୌଡ଼ି ପଳାଉଛି ।

ସେ ହିଁ ସ୍ମୃତି । ମୋର ପ୍ରେମ । ମୋ ଜୀବନଧାରା ପରିବର୍ତ୍ତନର ଆଧାର ଶିଳା ।

ସକାଳ ଦଶଟା ବେଳେ ଔଷଧ ଧରି ସମସ୍ତଙ୍କଠାରୁ ବିଦାୟ ମାଗିଲି । ବାରଣ୍ଡା ତଳକୁ ଓହ୍ଲାଇ କିଛି ଦୂର ଯିବା ପରେ ମୋଡ଼ ବୁଲିଲି । ସମ୍ପର୍କୀୟଙ୍କ ଘର ଅଦୃଶ୍ୟ ହେଲା । ପଥର ଓ ନାଲି ମାଟିର ସଡ଼କ ଉପରେ କିଛି ଦୂର ଯାଇଛି ତ ପଛରୁ ସରଳାର ଡାକ ଶୁଭିଲା ।

ବୁଲିପଡ଼ି ପଛକୁ ଚାହିଁଲି । ସରଳା ସାଙ୍ଗରେ ସୁ୍ମିତ ମଧ୍ୟ ଥିଲା । ସେମାନେ ପାଖକୁ ଆସି ମୋଠାରୁ ଦୁଇ ହାତ ଦୂରରେ ଠିଆ ହେଲେ । ସୁ୍ମିତର ମୁହଁକୁ ଆସ୍ତେ ଆସ୍ତେ ଆଖି ଉଠାଇ ଚାହିଁଲି । ଲାଲ ଦେଖାଗଲା ତା'ର ମୁହଁ ଓ ସେ ଅବଲୀଳା କ୍ରମେ ଆଖି ଦୁଇଟିକୁ ତଳକୁ ତଳକୁ ନେଇଯାଇ ଓଠ ଦୁଇଟିକୁ ପରସ୍ପର ସହ ଜାବୁଡ଼ି ଧରିଲା । ସରଳା ମୁଣ୍ଡ ପୋତି ତା' ବାଁ ହାତରେ ନଜର ନାକଠାରୁ ପାଟି ଯାଏଁ ଘୋଡ଼ାଇ ରଖିଥିଲା ହସକୁ ଚପାଇବା ପାଇଁ ଅଥବା ଆମକୁ ନ ଦେଖେଇବା ପାଇଁ ତା' ହସ ।

ସୁ୍ମିତକୁ ପଚାରିଲି : ଦଶମ ହେଲା ନା ? ସରଳା କହିଲା : ନା, ତା'ର ନବମ ଶ୍ରେଣୀ ।

ଏତିକ କଥା ଭିତରେ, ଲକ୍ଷ୍ୟ କଲି, ସୁ୍ମିତର ଆଖି ଦୁଇଟି କୂଳ ଲଙ୍ଘିବାକୁ ତତ୍ପର ନଈ ଭଳି ଭୟଙ୍କର ଭାବେ ସୁନ୍ଦର ଦେଖା-ଯାଉଛି ଓ ସେ ଉଦାସ । ସୁ୍ମିତର କଣ କଛି ଅସହମୀୟ ବ୍ୟକ୍ତିଗତ ଦୁଃଖ ରହିଛି ? ମୁଁ ମୁହୂର୍ତ୍ତେ ଭାବିଲି । ଯନ୍ତ୍ରଚାଳିତବତ୍ ମୋର ଡାହାଣ ହାତଟି ଉଠିଯାଇ ତା'ର ମୁଣ୍ଡକୁ ଆଉଁସିବା ପରେ ପିଠିଯାଏ ଖସିଗଲା ଓ ମୋର ନାଭି ପାଖରେ କେଉଁଠି ଅଗ୍ନେନକ ଝଡ଼ ସୃଷ୍ଟି ହୋଇ ସୁଁ ସୁଁ ଗର୍ଜନର ବାତ୍ୟା ସମ୍ପ୍ରସାରିତ ହେଲା ମୋର ଗ୍ରୀବ ଓ କଣ୍ଠ ପର୍ଯ୍ୟନ୍ତ । ନିଜକୁ ସମ୍ଭାଳି ନେଇ କହିଲି : ତୁମେମାନେ ଥାଅ, ମୁଁ ଯାଉଛି ।

କହିସାରି ମୁହଁ ବୁଲାଇଲାବେଳେ ସରଳା ମୋ ବାମ ହାତକୁ ଧରିଲା ଓ ମୋ ହାତରେ ଗୋଟିଏ ଚଉତା ହୋଇଥିବା କାଗଜ ଧରାଇ ଦେଇ କହିଲା : ସୁ୍ମିତ ଦେଇଛି । ତା'ର ଇଚ୍ଛା, ତମେ ବସ୍‌ରେ ବସିବା ପୂର୍ବରୁ ପଢ଼ିବ ନାହିଁ, ହେଲା ? ଡାହାଣ ପଟୁ ଟିକିଏ ଆଗକୁ ମାଡ଼ିଆସି ସୁ୍ମିତ ସରଳ ଓ ଛଳଛଳ ଭାବେ ଜିଜ୍ଞାସା କଲା, ପୁଣି କେବେ ଆସିବେ ?

ଏବେ କେତେ ପିଲାକିଆ ମନେ ହୁଏ । ଅଥଚ ସେଦିନ ମୁଁ ନିଜକୁ ବସ୍ ଧରିବା ପୂର୍ବରୁ ହିଁ ଆବେଗ ପ୍ରଣୋଦିତ ଭାବେ କାଗଜଟିକୁ

ଖୋଲି ପକାଇଥିଲି । ସ୍ମୃତି ଲେଖିଥିଲା, ଆପଣ କାହିଁକି ଆଜି ସକାଳେ ବୋଇତ ଭସାଇଲା ବେଳେ କହିଲେ

ଯା'ରେ ବୋଇତ ଭାସି ଯାଆ

ସ୍ମୃତିର ବରକୁ କୋଳରେ ବସାଇ,

ଏ ପାରିକୁ ବେଗେ ନେଇ ଆ' ?

ଆଜିକାଲି କାର୍ତ୍ତିକ ପୂର୍ଣ୍ଣିମା ଗୋଟେ ଶ୍ରାଦ୍ଧ ଦିବସ ପରି ସ୍ମୃତି-ରୋମନ୍ଥନ ଦାବି କରେ । ଗୃଲିଯାଏ । ବର୍ଷଟିଏ ବିତେ । ପୁଣି ଆସେ । ବାସ୍ ଆସେ ଓ ଯାଏ । ଏମିତି ଗୃଲିଥାଏ ।



# ଯେଝା ବାଟରେ ସିଏ

ଆଇଜାକ୍ ଥିଲା ଜେନେରାଲ ସିଫ୍ଟ ଡିଉଟିରେ । ଦିନ ଦୁଇଟା ବେଳେ କାମିନୀ, ତା ପତ୍ନୀ, ଫୋନ୍‌କଲା ପ୍ଲାଣ୍ଟକୁ । ଖୁବ ବିବ୍ରତ ହୋଇ ଜଣାଇଲା, ବାପା ନଅଟା ବେଳୁ କୁଆଡ଼େ ବୁଲିଯିବା ଭଳି ବାହାରିଗଲେ ଯେ ଏ ଯାଏ ଫେରିନାହାନ୍ତି । ଆଇଜାକ୍ ନିରୁଦ୍‌ବିଗ୍ନ ସ୍ୱରରେ କହିଲା, ଏତେ ବ୍ୟସ୍ତ ହେବାର କାରଣ କିଛି ନାହିଁ । ତମେ ଯଦି ଖିଆପିଆ କରିନାହଁ, ତେବେ ତାଙ୍କୁ ଆଉ ଅପେକ୍ଷା ନକରି ଖାଇନିଅ । ସେ ଏଥର ବି ନିଶ୍ଚୟ ଗାଁକୁ ଚାଲିଯାଇଥିବ ।

ଡିଉଟି ସାରି ସନ୍ଧ୍ୟାରେ ଆଇଜାକ୍ ଘରେ ପହଞ୍ଚିବା ବେଳକୁ ତା ମୁହଁ ଫିଣଫିଣ ଓ ଲାଲ ଦେଖାଯାଉଛି । ସେ ଦୁମ୍ ଦୁମ୍ ପାଦ ପକାଇ ଘର ଭିତରକୁ ଆସିବା ଦେଖି କାମିନୀ ଭୟ ପାଇଲା ଓ ସ୍ୱତଃସ୍ଫୂର୍ତ୍ତ କହିପକାଇଲା, ବିଶ୍ୱାସ କର ମୁଁ ତାଙ୍କୁ ମୋଟେ କିଛି କହିନାହିଁ । ସେ ଏପରି ଭାବରେ ଗଲେ ଯେ, ମନେ ଲାଗିଲା, ଏଇଠି କୋଉଠି ବୁଲାବୁଲି କରି ସାଙ୍ଗେ ସାଙ୍ଗେ ଫେରି ଆସିବେ । ତେଣୁ ମୁଁ ତାଙ୍କୁ କିଛି ପଚାରି ନାହିଁ ମଧ୍ୟ ।

ଆଇଜାକ୍ ରାଗିଥିଲା ନିଶ୍ଚୟ । କିନ୍ତୁ କାମିନୀ ଉପରେ ନୁହେଁ । ସେ କହିଲା, ମୁଁ କଣ ଜାଣିନି, ତମେ କେବେ ବି ବାପାଙ୍କୁ ଖରାପ ଲାଗିବା ଭଳି ପଦେ କଥା ସୁଦ୍ଧା କହିପାରିବ ନାହିଁ ! ମୁଁ ଜାଣେ । ମତେ

ଖାଲି ଏଇଥିପାଇଁ ଦୁଃଖ ଆଉ ବିରକ୍ତ ବି ଲାଗୁଛି ଯେ, ବୁଢ଼ାଟା ଟିକିଏ ଟିକିଏ କଥାରେ ଏମିତି ବାରମ୍ବାର କାହିଁକି କଛି କୁହାବୋଲା ନକରି ଚୁପ୍‌ଚାପ୍ ଗାଁକୁ ଚାଲିଯାଉଛି !

: କିନ୍ତୁ ତମେ ବି ତ ତାଙ୍କୁ କିଛି କହୁନ ! କାମିନୀ କହିଲା ବା ପ୍ରଶ୍ନକଲା ।

: ହଁ, କହୁଛି । ଆଇଜାକ୍ କହିଲା ଓ ଗୋଟିଏ ଦୀର୍ଘଶ୍ବାସ ଛାଡ଼ି କହିବା ଜାରି ରଖିଲା, କିନ୍ତୁ ଏମିତି କିଛି ଗୁରୁତର କଥା ନୁହଁ ଯେ ସେ ଘରଛାଡ଼ି ଚାଲିଯିବ । ଅବଶ୍ୟ ସେ ଯେତେଥର ବି ଏମିତି ଗାଁକୁ ଚାଲିଯାଇଛି, ତୁଚ୍ଛା ତୁଚ୍ଛା କଥାରେ ହିଁ ଅଭିମାନ କରି ଯାଇଛି । ମତେ ତ ଲାଗିଲାଣି, ଗାଁର ମୋହ କେବଳ ତା ପାଇଁ ଏତେ ପ୍ରବଳ ଯେ କେମିତି ଏଇଠୁ ଖସିଯିବ ବୋଲି ସେ ଖାଲି ବାହାନା ଖୋଜୁଛି । କିନ୍ତୁ କେତେ ଯେ କଷ୍ଟ ଭୋଗ କରୁନାହିଁ ସେ ଗାଁରେ ! ମା’ ବଞ୍ଚିଥିବା ବେଳେ ଯେତେ ଡାକିଲି ଏଠି ଆସି ରହିବା ପାଇଁ, ମାନିଲା ନାହିଁ । ମା’କୁ ବି ମନାକଲା । ଏବେ ମା’ ନଥିବାରୁ ତାକୁ ଗାଁରେ ଏକାଏକା ନିଜେ ସବୁ କାମ କରି ଚଳିବାକୁ କଷ୍ଟ ହେଉଥିବ କି ନାହିଁ ? ସେ କଣ ବୁଝୁନି ? ସବୁ ବୁଝୁଛି । ତଥାପି କେତେଦିନକେ ଥରେ ତାକୁ କଣ ରୋଗ ଧରେ କୁଛି—ଚୁପ୍‌ଚାପ୍ ଗାଁକୁ ଚାଲିଯାଉଛି । ଏମିତି ଅସମ୍ଭବ ଲୋକର ହେପାଜତ୍ ଆଉ କେପରି ନିଆଯାଇ ପାରିବ—ବାପା ହେଲେ ବି ! ଯାଇଛି ତ ଯାଉ; ଏଥର ଆଉ ମୁଁ ତାକୁ ଡାକିବାକୁ ଯାଇଛି ତ ମୁଁ ବି ତା’ର ପୁଅ ନୁହେଁ । ମତେ କଣ ସିଏ ସତରେ ତା’ ପୁଅ ବୋଲି ଭାବେ ?

ଶେଷ ଆଡ଼କୁ ଆଇଜାକ୍‌ର କଣ୍ଠ ଆର୍ଦ୍ର ଜଣାପଡ଼ିଲା ଓ ତା’ ସ୍ବରରେ ଫୁଟିଉଠିଲା ଅଭିମାନ ଏବଂ କ୍ଷୋଭ । ପ୍ରକୃତରେ ସେ ତା’ ବାପାକୁ କେତେ ଯେ ଭଲପାଏ ସେକଥା କାମିନୀ ଭଲରୂପେ ଜାଣେ । ତେଣୁ ସିନା ବୁଢ଼ାର ଅଡ଼ିଗଣ୍ଡ ଗାଉଁଲି, ପୁରୁଣାକାଳିଆ ଢଙ୍ଗ ସତ୍ତ୍ବେ ସେ ନିଜେ ବି ତା’ର ସମସ୍ତ ଦାୟିତ୍ବ ନିଏ, ସେବା ଯତ୍ନ କରେ, ତା’ର କୌଣସି ଇଚ୍ଛା ବା ଆଚରଣକୁ ହତାଦର କରେନାହିଁ ।

ବାସ୍ତବରେ ବୁଢ଼ାଙ୍କୁ ବରଦାସ୍ତ କରିବା ବିଲ୍‌କୁଲ୍ ସହଜ କଥା ନୁହେଁ । କାମିନୀକୁ ଥରେଥରେ ଭାରି ହୀନମାନ ଲାଗେ । ସହରରେ ଜୀବନଯାପନ କରିବା ଦିଗରେ ଆଇଜାକ୍ ତାଙ୍କ ବଂଶର ପ୍ରଥମ ଲୋକ ହୋଇପାରେ ଓ ବୈବାହିକ ସ୍ୱୀକାର କରୁଛି ବୋଲି ରାଉରକେଲା ପରି ଏକ ବଡ଼ ସହରରେ ରହିବାର ସୁଯୋଗ ପାଇଛି । କିନ୍ତୁ ସେ ଜନ୍ମ ହୋଇଥିଲା, ବଢ଼ିଥିଲା ଓ ଉଚ୍ଚଶିକ୍ଷା ଲାଭ କରିଥିଲା ଏହାଠାରୁ ବି ବଡ଼ ସହର—ରାଞ୍ଚିରେ । ତିନିପୁରୁଷ ହେଲା ରାଞ୍ଚିରେ ସେମାନେ ସ୍ଥାୟୀଭାବେ ବସବାସ କରି ଆସୁଛନ୍ତି । ସେଠାରେ ଅଛି ତାଙ୍କର ପ୍ରକାଣ୍ଡ ଘର; ଅଚଳାଚଳ ସମ୍ପତ୍ତି । ତିନୋଟି କାର୍‌ର ମାଲିକ ତା ବାପା । ସେ ଚୁରୁଟ୍ ଟାଣନ୍ତି । କ୍ଲବ୍ ଯାଆନ୍ତି । ସମାଜର ଉଚ୍ଚବର୍ଗର ଲୋକମାନଙ୍କ ସହ ତାଙ୍କର ବସାଉଠା । ତାଙ୍କୁ କେହି ଆଦିବାସୀ ବୋଲି ଭାବନ୍ତି ହିଁ ନାହିଁ । ରାଞ୍ଚିରେ ତାଙ୍କର ବହୁତ ଧାକ୍, ଭାରି ଖାତିର୍ । ଆଉ ଆଇଜାକ୍‌ର ବାପା ?

ଆଇଜାକ୍ କୁଜୁର୍ ଇଞ୍ଜିନିୟର ନ ହୋଇଥିଲେ କାମିନୀ ବା ତାଙ୍କୁ କାହିଁକି ବାହା ହୋଇଥାନ୍ତା ? ଆଦିବାସୀ କୁଳରେ, ଯଦିବା ଖ୍ରୀଷ୍ଟିଆନ୍‌ମାନେ ଟିକିଏ ଆଗୁଆ, ଏତେ ପାଠ ପଢ଼ି ବଡ଼ ଚାକିରି କରୁଥିବା କେତେଜଣ ପିଲା ବା ମିଳନ୍ତି ? ତାହା ପୁଣି ଓଡ଼ିଶାରେ ? ବିହାର କଥା ଅଲଗା । କିନ୍ତୁ ସେମାନଙ୍କର ମୂଳ ବାସସ୍ଥାନ ଓଡ଼ିଶାର ସୁନ୍ଦରଗଡ଼ ହୋଇଥିବାରୁ ବାପା ଓଡ଼ିଶାରେ ସମ୍ବନ୍ଧ ସ୍ଥାପନ କରିବାକୁ ଚାହିଁଲେ । ସେ ଏକ ଆକସ୍ମିକ ସଂଯୋଗ ଅବଶ୍ୟ ଯେ ଆଇଜାକ୍ ସହ କାମିନୀର ବିବାହ ସମ୍ପନ୍ନ ହୋଇପାରିଲା । ବୈବାହିକ ବନ୍ଧନ ସର୍ବଦା ସଂଯୋଗର ଜୟଗାନ କରି ଆସିଛି ଯେଉଁ ସମ୍ପର୍କ ପୁଣି ଜନ୍ମଲାଭ କରିବା ପୂର୍ବରୁ ଯୋଡ଼ା ହୋଇ ସାରିଥାଏ । ମର୍ତ୍ତ୍ୟରେ ଆନୁଷ୍ଠାନିକ ବିବାହ କେବଳ ସାମାଜିକ ସ୍ୱୀକୃତି ପାଇଁ ଅନୁଷ୍ଠିତ ହୁଏ । ତେଣିକି କ୍ରମେ ମନରେ ଆସିପାରେ ଗ୍ଲାନି ଅଥବା ଅଖଣ୍ଡ ଆନନ୍ଦ ଆଜୀବନ । ବିବାହ କରି ଦୁହେଁ ଭାରି ଖୁସି ହେଲେ ନିଶ୍ଚୟ, କିନ୍ତୁ କାମିନୀର ମନରେ ଅବସାଦ ସୃଷ୍ଟି ହେଲା ଯେବେ ସେ ଶ୍ୱଶୁରଙ୍କ ଗାଁକୁ ପ୍ରଥମ ଥିବାପରେ ଜାଣିପାରିଲା, ଶାଶୂ ଓ ଶ୍ୱଶୁର ରହିଛନ୍ତି ସେ ଗାଁରେ ରହି । ରାଉରକେଲା

କେତେ ବା ଦୂରବାଟ ? ବାଇଶ ମାଇଲ ତ ! ପୁଅ ଚାହିଁଲେ ସବୁଦିନ ଆସିପାରିବ । ଅନ୍ତତଃ ଶନିବାର, ରବିବାର ତ ନିଶ୍ଚୟ । ସେ ଅବସାଦ ଥିଲା ସାମୟିକ । କାମିନୀ ରହିଲା ନାହିଁ । କାମିନୀ ମନରେ ବିଶେଷ ଗ୍ଲାନି ସୃଷ୍ଟି ହେଲା ଶାଶୁ ମରିଯିବା ପରେ । ବୁଢ଼ା ଏକଲା ଗାଁରେ କଷ୍ଟ ପାଇବ ବୋଲି ଆଇଜାକ୍ ତାଙ୍କୁ ପାଖକୁ ଡାକିଲା । ସେ ଗାଁ ଛାଡ଼ି ଯିବାକୁ ମଙ୍ଗିଲା ନାହିଁ । ଦେହରେ ସିନା ଆଉ ବଳନାହିଁ କି ରକ୍ତରେ ନାହିଁ ତେଜ, ହେଲେ ମନୋବଳ ପୂରା ଇସ୍ପାତ । ଜଷ୍ଟ ଇସ୍ପାତ ତ ନୁହେଁ, 'ସେଲ୍' ଇସ୍ପାତ । ବହୁ କଳା କୌଶଳରେ ବୁଝାଇ, ପଟାପଟି କରି ଆଇଜାକ୍ ବୁଢ଼ାକୁ ସାଙ୍ଗରେ ଧରି ଆସିଲା । ଶ୍ୱଶୁରଙ୍କ ପାଖରେ ରଖିବା ନେଇ ଅନ୍ୟ ଅନ୍ୟ ଏକୁଟି-ବାହୁଡ଼ା ପରିବାରର ନାରୀମାନଙ୍କ ଭଳି କାମିନୀର ହୃଦୟରେ ତିଳେମାତ୍ର ବୈରଭାବ ନଥିଲା । କିନ୍ତୁ ପୁଅ ବୋହୂଙ୍କ ସହିତ ମାସେ ପନ୍ଦରଦିନ କଟାଇବା ପାଇଁ, ପାଚିଲାପରି ପ୍ରାୟେ ନିଃସଙ୍ଗ, ବୁଢ଼ାବୁଢ଼ୀ ଦୁଇଜଣ ଦୈବାତ୍ କେବେ ଆସିଗଲେ ସେମାନଙ୍କୁ ଦୁଇଦିନ ପରେ ହିଁ ବିଦା କରିଦିଆ ଯାଉଥିବା କଥା ଏଇ କଲୋନୀରେ ବାରମ୍ବାର ଦେଖିବାକୁ ପାଉଥିବାରୁ କାମିନୀର ଆଶଙ୍କା ହେଲା ଶ୍ୱଶୁର ବୁଢ଼ା ଗାଉଁଲି ଢଙ୍ଗ ଯଦି ନ ଛାଡ଼ନ୍ତି ତେବେ ନିଜ ଶାଶୁ ଶ୍ୱଶୁରଙ୍କ ଛାଇ ପଡ଼ିଲେ ଯେଉଁ କଲୋନୀଆଣୀମାନଙ୍କର ନାକି ଟେଏଁ ସେମାନେ ନିଜର ସମସ୍ତ କୁଟନୀତି ଓ ଅଭିସନ୍ଧିକୁ ଯଥାର୍ଥରେ ମାନ୍ୟତା ଦେବାପାଇଁ ବା ଘୋଡ଼ାଇ ପକାଇବା ନିମନ୍ତେ ନାକରେ ଆଙ୍ଗୁଠି ଦେଇ ହସିବା ସଙ୍ଗେ ସଙ୍ଗେ ସହି ନହେବା ଭଳି ବାରକଥା କହିବେ, ଫୁସ୍‌ଫାସ୍ ହେବେ । ସହଜେ ତ ଆଦିବାସୀ କହିଲେ ସେମାନଙ୍କର ଦୃଷ୍ଟି ଟିକିଏ ତଳିଆ । ସତେକି ସେମାନେ ଦୁଇଶହ ବର୍ଷ ତଳର ଇଂରେଜ ଓ ଆଦିବାସୀମାନେ ନିଗ୍ରୋ ! କିରେ, ତମ ଭିତରୁ ବି ତ କିଏ ସଂଖ୍ୟାଲଘୁ ସମ୍ପ୍ରଦାୟ କୋଟାରେ ଚାକିରି ପାଇଥିବ । ପୁଣି କିଏ କେଉଁ ମନ୍ତ୍ରୀର ସୁପାରିଶରେ ଚାକିରି ଖଣ୍ଡିକ ବହୁ କଷ୍ଟରେ ପାଇଥିବ । ମୋ ବାପା ତ ବଜାରରେ ମନ୍ତ୍ରୀ ତିଆରି କରେ । କିନ୍ତୁ ଶ୍ୱଶୁର ବୁଢ଼ାର ଆଚରଣ ଦେଖିଲେ କିଏ କଣ ସେ ସବୁକଥା ବିଶ୍ୱାସ କରିବ । ଯଦିବା କିଏ ବିଶ୍ୱାସ କରି ଈର୍ଷା କରିବସେ, ଶ୍ୱଶୁରଙ୍କ ପ୍ରହସନ ଦେଖିବା

ମାନେ ନମିଷକେ ଉପହାସ କରିବା ଆରମ୍ଭ କରିଦେବ ଓ କାହାର ବି ଦାୟିତ୍ୱ ନନେଇ ସୁଦ୍ଧା ଜାହିର୍ କରିବସିବ ନିଜର ଶ୍ରେଷ୍ଠତା ।

ଆଇଜାକ୍‌ର ବାପା ମାରିଆନୁସ୍ କୁଜୁର୍ ନିପଟ ମଫସଲର ସରଳ ଆଦିବାସୀ ଲୋକ । ଛନ୍ଦକପଟ ବୁଝେନା । ଆଦବ୍ କାଇଦା ଜାଣେନା । ପିଲାଦିନରୁ ସେ ଶିଖିଛି, ଯିଏ ସାଙ୍ଗରେ ବସି ହାଣ୍ଡିଆ ପିଏ ଓ ସାଦ୍‌ରି ଭାଷା କହେ ସେ ତା'ର ନିଜ ଲୋକ । ତେଣିକି ସେ ଯେଉଁ ଜାତି, ଯେଉଁ ବର୍ଣ୍ଣ, ଯେଉଁ ଭାଷା, ଯେଉଁ ଦେଶର ଲୋକ ହୋଇଥାଉ ପଛେ । ପିଲାଦିନରୁ ହିଁ ମୁଣ୍ଡରେ ପଗଡ଼ି ବାନ୍ଧି, ହାତରେ ଲାଠି ଧରି ଖାଲି ପାଦରେ ସେ ହଜାର ହଜାର ଥର ପରିଭ୍ରମଣ କରିଛି ସାରଣ୍ଡା ଜଙ୍ଗଲ । ଭାଲୁ, ବାଘ, ସାପ, ଭୂତକୁ ଡରେ ନାହିଁ । ବୟସ ହେଲାଣି ସତୁରି । ମଧ୍ୟମ ଧରଣର ଉଚ୍ଚତା । କଳା ମଚମଚ ଦେହ । ଉଜ୍ଜ୍ୱଳ ଆଖି ପେଜୁଆ ଧରି ଆସିଲାଣି । ଚମ ଧୂଡ଼ୁଧୂଡ଼ୁ । ଅଣ୍ଟା ଟିକିଏ ନଇଁ ଗଲାଣି । ସହରକୁ ଆସିବାକୁ ତା'ର ମୋଟେ ଆଗ୍ରହ ନଥିଲା । ପୁଅ ବାଧ୍ୟ କଲା । କଣ କରନ୍ତା ? ପ୍ରକୃତରେ ବୁଢ଼ୀ ମରିଯିବା ପରେ, ହାତରେ ମୁଠେ ଫୁଟାଇ ଗାଁରେ ଏକାଏକା ମରଣକୁ ଅପେକ୍ଷା କରି ପଡ଼ିରହିବା ଭାରି କଷ୍ଟକର କଥା । ସେ ଛଳଛଳ ଆଖିରେ ସାଇଭାଇଙ୍କଠାରୁ, ଚର୍ଚ୍ଚର ଫାଦର୍‌ଠାରୁ, କ୍ରୁଶବିଦ୍ଧ ଯୀଶୁଠାରୁ ବିଦାୟ ମାଗି ପୁଅ ସହିତ ଆସିଲା । ବହୁତ ଦୂର ଆସିବା ଯାଏ ଫେରି ଫେରି ଗୁହୁଁଥିଲା ଜନ୍ମମାଟି ଆଡ଼କୁ, ଲୁହ ପୋଛୁଥିଲା । ଦୁଇ ହାତ ମୁଣ୍ଡ ପର୍ଯ୍ୟନ୍ତ ଉଠାଇ ଥରଥର ପିଟୁଥିଲା କପାଳ ଉପରେ । ତା' ଛାତି ଫାଟି ଯାଉଥିଲା । ଛାତି ତେଇଁ ଉପରକୁ ଉଠି ଆସୁଥିଲା ରକ୍ତର ବନ୍ୟା ।

ସହରରେ ପହଞ୍ଚିବା ପରେ ତା' ପାଇଁ ପ୍ରଥମ ସମସ୍ୟା ହେଲା ପାଇଖାନା । ସେ ଅଡ଼ି ବସିଲା, ବାହାରକୁ ଝାଡ଼ା ଯିବ । ଆଇଜାକ୍ କହିଲା, ଏଇଠି ଆଉ ବାହାର କଣ ? ଯେଉଁପଟେ ଗଲେ ବି ଅନ୍ତତଃ ପାଞ୍ଚ କିଲୋମିଟର ଭିତରେ ବାହାର ବୋଲି କିଛି ନାହିଁ । ତା' ଛଡ଼ା ଦେଶ ଏତେ ପ୍ରଗତି କରି ଆଉ ଲାଭ କଣ ହେଲା ? ସେଇଥିପାଇଁ ତ ଘରେ ଘରେ ପାଇଖାନା । ମାରିଆନୁସ୍ ବୁଝିପାରିଲା ନାହିଁ, କେବଳ

କେଲ୍ବ ଦେଖିନପାରିବା ଭଳି ଝାଡ଼ା ବସିପାରିଲେ ଦେଶ କେମିତି ପ୍ରଗତି କରୁଛି ବୋଲି ବୁଝାଯିବ ? ସେ ସାଲସ୍ କରିପାରିଲା ନାହିଁ । ଅଗତ୍ୟା ସେ କପରି ଅନ୍ଧାର ଥାଉଥାଉ, ଲୋକମାନେ ଏ' ସିଫ୍ଟ ଡିଉଟିରେ ବାହାରିବା ପୂର୍ବରୁ ତା'ର ପ୍ରାକୃତିକ କର୍ମଟି ସମସ୍ତଙ୍କ ଇଜ୍ଜତ ବଞ୍ଚାଇ ସୁରୁଖୁରୁରେ ଧମାପନ କରିପାରିବ ତା'ର ଏକ ନିରାପଦ ଉପାୟ ବାହାର କରିବାକୁ ହେଲା ଆଇଜାକ୍‌କୁ । କିନ୍ତୁ ତିନଦିନ ପରେ ତାକୁ 'ବଡ଼ କ୍ଲାନ୍ତ ଲାଗିଲା । ମହତ ଗୃହିଯିବାର ଛକପକ ଭୟ ବୋଝଟିଏ ପରି ତା' ଛାତି ଭିତରଟାକୁ ରୁନ୍ଧ ପକାଇଲା । ଚତୁର୍ଥ ଦିନ ସେ ବୁଢ଼ାକୁ ବାଧକଲା ପାଇଖାନାକୁ ଯିବାପାଇଁ ତ ବୁଢା 'ଘୋର ବନେ କଷଣରେ ପଡ଼ିଥିବା ମୃଗୁଣୀପ୍ରାୟେ' ଛଟପଟ ହେଲା ଓ ଫଁ ଫଁ ନିଃଶ୍ୱାସ ଛାଡ଼ିଲା । ଆଇଜାକ୍ କଠୋର ପ୍ରଶ୍ନ କଲା, ପାଇଖାନାରେ ତୋର କଣ ଅସୁବିଧା ?' ବୁଢ଼ା କାନ୍ଦ କାନ୍ଦ ହୋଇ କହିଲା, 'ଇଗୋ ମୋକେ ଘର୍ ଲେଖେ ଲାଗତ୍ !'

ସକାଳ ଆଠଟା ବେଳେ ଆଇଜାକ୍ ଜେନେରାଲ୍ ସିଫ୍ଟ୍ ଡିଉଟିରେ ବାହାରିଯିବା ପରେ କାମିମାକୁ କିଛି ନ ଜଣାଇ ଚୁପ୍‌ଚାପ୍ ମାରିଆନୁସ୍ ଫେରାର୍ ।

ପରଦିନ ରବିବାର । ସକାଳୁ ସକାଳୁ ଆଇଜାକ୍ ମୋଟରେ ସାଇକଲ ଛୁଟାଇଲା ଗାଁକୁ । ବାପାର ଗୋଡ଼ହାତ ଧରିଲା । ବାର ନେହୁରା ହେଲା । ବୁଢ଼ା ତ ପ୍ରଥମେ ମୋଟେ ଚକିଲା ହିଁ ନାହିଁ । ଆଇଜାକ୍ କହିଲା, ମୋର ଇଜ୍ଜତ ପ୍ରତି ଟିକିଏ ଧ୍ୟାନ ତ ଦେ' । ତୁ ମୋର ବାପା । ଏତେ ପାଠ ପଢ଼ାଇଲୁ । ଇଞ୍ଜିନିୟର କଲୁ । ଗାଁରେ ଚଳିବା ଭଳି ସହରରେ ବି ଯଦି ଚଳିବୁ ଏତେ କଷ୍ଟରେ ମିଳିଥିବା ମାନସମ୍ମାନ ମାଟିରେ ମିଶିଯିବ ନାହିଁ ? ତୁ ଯଦି ବାପ ହୋଇ ପୁଅ ପାଖରେ ରହିବୁ ନାହିଁ, ସହର ଜାଗାରେ ଖାପ ଖୁଆଇ ଚଳିପାରିବୁ ନାହିଁ—ତାହେଲେ ମତେ ପାଠ ନ ପଢ଼ାଇ ଗୃହବାସ ଶିଖେଇଥାନ୍ତୁ— ମୁଁ ତୋ ପାଖରେ ରହିଥାନ୍ତି । ଆମେ ମିଳିମିଶି ଏକାଠି ଚଳିଥାନ୍ତେ । କେବେ ପୁଣି ଝଗଡ଼ା ବି କରିଥାନ୍ତେ । ତୁ ସେଠି କେବେ ଝଗଡ଼ା

କଲେ କ ମୋ ଉପରେ ରାଗିଲେ ବି ମୁଁ ସହିବି । କିନ୍ତୁ ତୁ ଫଳେଇ ଆସିବାକୁ ସବୁବେଳେ ଆତୁର କାହିଁକି ହେଉଛୁ ? ଗ୍ଭଲ୍—ଯିବା ଗ୍ଭଲ୍ । ତୋ ବୋହୂ ଗୃହିଁ ବସିଥିବ ।

ବୁଢ଼ା ଭିତରେ କୁହୁଳୁଥିବା ଏକ ବିରକ୍ତିର ସୂଚନା ପାଇଲା ଆଇଜାକ୍, ଯେତେବେଳେ ସେ କହିଲା ଯେ ଯେଉଁ ଆଦିବାସୀ ଘରର ବୋହୂକୁ ହାଣ୍ଡିଆ ବନେଇ ଆସେନାହିଁ ସେ କି ବୋହୂ ? ଆଦିବାସୀ ବୋହୂର ତ ତାହା ପ୍ରଥମ ଗୁଣ ହେବା କଥା । ତା ନ ହେଲେ ସେ ତା ସ୍ୱାମୀ, ଶ୍ୱଶୁରଙ୍କୁ କିପରି ବା ନୀରୋଗ, ସୁସ୍ଥ, ବଳୁଆ, ଲଢ଼ୁଆ ଏବଂ କର୍ମକ୍ଷମ ରଖିପାରିବ ?

ଆଇଜାକ୍ ସ୍ମିତ ହସିଲା । କହିଲା, ସେ କଣ ଗାଉଁଲି, ଅଶିକ୍ଷିତା ଝିଅ ହେଇଚି ? କୋଇଲି, ଗୋପୀ ଭାଷାରେ କଣ ତା'ର ପଢ଼ା ଶେଷ ? ପୁରା ବାଇବେଲ ତାର ମୁଖସ୍ଥ । ଗୀତା, ଭାଗବତ ଉପରେ ବି ବହୁତ କଥା ଜାଣିଚି । ତୁ ବୁଢ଼ା ହେଲୁଣି । ସେ ଘରେ ଏକା ବସିଚି । ତାଠାରୁ ବାଇବେଲ ଶୁଣୁନୁ ? ଧର୍ମ ଚର୍ଚ୍ଚା କରୁନୁ ? ଦୁହେଁ ମିଶି ହମିରପୁର ଚର୍ଚ୍ଚକୁ ଯାଉନାହଁ ? ସେ ନିଶା ଆଗରେ ହାଣ୍ଡିଆ କି ବା ସ୍ଥିର ? ଏତେ ପାଠ ପଢ଼ିଥିବା ଝିଅଟିଏ ହାଣ୍ଡିଆ ବନେଇବା କେବେ ଶିଖନ୍ତା ? କାହିଁକି ବା ଶିଖିଥାନ୍ତା ?

ମାରିଆନୁସ୍ ପ୍ରଶ୍ନକଲା : କା' ଲେ ନ ବନାବେ ? ଆଦିବାସୀ ଗ୍ଭେଣ୍ଡି ହେକେକ୍ କି ନା ଲଗେ ? ହାଣ୍ଡିଆ ବନାଇକ୍ ନ ଜାନେଲ୍ ତ କା' ଆଦିବାସୀ ଗ୍ଭେଣ୍ଡି ହେକେ ?

ଆଇଜାକ୍ ସମାଧାନ କରିବା ଭଙ୍ଗୀରେ ଅନୁରୋଧ କଲା, ହଉ ଜାଣିନି ତ କଣ କରିବା ? ମୁଁ ବି ସେ ହାଣ୍ଡିଆ ବନେଇ ଜାଣେ କି ନାହିଁ ନ ପଗ୍ଭରି ବାହା ହେବାକୁ ହଁ କରି ବଡ଼ ଭୁଲ୍ କଲି । ଏବେ ତ ଆଉ ତାକୁ ଘରୁ ବାହାର କରିଦେଇ ହେବନାହିଁ । ହାଣ୍ଡିଆ କଥା ଛାଡ଼୍ । ମୁଁ ତୋ ପାଇଁ ବିଦେଶୀ ଆଣିଦେବି । ତୁ ପ୍ରତିଦିନ ପିଇବୁ, ହେଲା ?

ତାହା ଶୁଣି ବୁଢ଼ା ରାଗିଯାଇ ଠିଆ ହୋଇଗଲା । କହିଲା : ହାମ୍‌ରେ ଆଦିବାସୀ । ହାଣ୍ଡିଆ ଛୋଇଡ଼୍ କେ ବଦେଶୀ କା କର୍ ପିଅବ୍ ? ବଦେଶୀ ପି'ଲେ ହାମ୍‌ରେ ଡୁଇବ୍ ଯା'ବ୍ । ମୋଏ ଆଦିବାସୀ ରହେକ୍ ଚାହନ୍ । ମୋର୍ ଜାଇତ୍ ହିଁ ମୋର ଗର୍ବ କ ବାତ୍ ।

ଦେଶ ଆସି ବହୁରାଷ୍ଟ୍ରୀୟ କମ୍ପାନୀ ହାତରେ ବନ୍ଦି ହେବାକୁ ବସିଲାଣି, ବାପା ଆହୁରି ସତଚାଲିଶି ମସିହା ପୂର୍ବର ଆଦିବାସୀ— ସଂସ୍କାର-ବଳୟରୁ ଛାଡ଼ପାଉ ନାହିଁ ଓ ଛାଡ଼ିବାକୁ ନାରାଜ ବି । ଠିକ୍ ଭାବେ ସ୍ୱଦେଶୀ ହେବାକୁ ଶିଖିବା, ସଭ୍ୟ ମାର୍ଜିତ ହୋଇପାରିବା ପୂର୍ବରୁ ପୁଣିଥରେ ବଦେଶୀଙ୍କ ଅଧୀନକୁ ଚାଲିଯିବାର ନିଯୁକ୍ତି ଆଦେଶ ନେବାକୁ ପଡ଼ିବ ହୁଏତ ତା'ର ଏଇ ଯେ ଆଉ ସ୍ୱଳ୍ପ ଅବଶିଷ୍ଟ ଜୀବନ କାଳରେ । କେତେଥର ଏମିତି ସ୍ୱାଧୀନ—ପରାଧୀନ-ସ୍ୱାଧୀନ ହେବା ପରେ ଯାଇ ଏ ବୁଢ଼ା ଆଦିବାସୀ ବାପଟି ସୁସଭ୍ୟ ହୋଇପାରିବ କିଏ ଜାଣେ ? କିଏ ତାକୁ ମଣିଷ କରିବ—କାହାର ସେ ଦାୟିତ୍ୱ—କିଏ ତୁଲାଏ ? ପୁଅ ହୋଇ, ଆଉ କେତେ ଦିନ ବା ବୁଢ଼ା ବଞ୍ଚିବ—ସେ ତା'ର ମର୍ଜି ବିରୁଦ୍ଧରେ ଯାଇ ତାକୁ କାହିଁକି ଅଧିକ କଷ୍ଟ ଦେବ ? କଣ ବା ପାଇଛି ସିଏ ଜୀବନରେ ? କଣ ବା କ୍ଷତି କରିଛି କାହାର ? କେବଳ ନିଜ ଇଚ୍ଛାରେ ଟିକେ ବଞ୍ଚିବାକୁ ଚାହୁଁଛି । ଆଇଜାକ୍ କହିଲା, ଚାଲ୍—ମୁଁ ତତେ ହାଣ୍ଡିଆ ଦେବ ।

ବୁଢ଼ା ପାଇଁ ହାଣ୍ଡିଆ ଯୋଗାଡ଼ କରିବା ମୋଟେ କଷ୍ଟକର ହେଲାନାହିଁ । ଆଇଜାକ୍‌ର ଡିପାର୍ଟମେଣ୍ଟରେ ସମାସୀ କାମ କରେ । ଭାରି ବୋଲକରା, ଯୋଗାଡ଼ିଆ ଓ ଧୀରସ୍ଥିର ପ୍ରକୃତିର ପିଲା । ତା' ଘର ଲୁଆକେରା । ନିଜ ଡେପୁଟୀ ମେନେଜରଙ୍କ ବାପା ପାଇଁ ସେ ଏତିକି କରିପାରିବ ନାହିଁ ? ପୁରା ଫାଷ୍ଟକ୍ଲାସ୍ ଘରୁଆ ହାଣ୍ଡିଆ ମୁଁ ପ୍ରତିଦିନ ଯୋଗାଇ ଦେବି ସାର୍ ! ସେ ତୃପ୍ତିର ସହିତ କହିଲା । [illegible]

ସମସ୍ୟା ଏଥିରେ ଶେଷ ହେଲା ନାହିଁ । ଦିନରେ ହେଉ [illegible] ରାତିରେ ହେଉ, ହାଣ୍ଡିଆ ଟୋପେ ପିଇଦେବା ମାତ୍ରେ ମାରିଆଣ୍ଟୁସ୍

ପରମ ଆନନ୍ଦରେ କଂଲେମ୍ନି କମ୍ପାଇ ଗୁଡ଼ାଇ ଗୀତର ଲହର । କେତେ ଯେ ସେ ଗୀତ ଗାଏ । ପଦେ ପଦେ :

"ବସ୍ ଗାଡ଼ି ମେ ଆକାବାକା ଲଗେଲା···ଲଗେଲା···
ସାଇକଲ୍ ମେ ଯା'ବେ ଫୁଲେଗା; ହାଓ୍ୱା ଲଗେଲା"

ସେଇ ଗୋଟିଏ ପଦକୁ ଲହରେଇ ଲହରେଇ ସ୍ୱର ଉଚା ନୀଚା କରି ଗାଇ ଚାଲିବ ମନବୋଧ ହେବାଯାଏ । ଅଥବା ଗାଇବ—

"ରାଉରକେଲା କାର୍‌ଖାନା କୋ'ନ ବାନାୟା ?
ହାମ୍ ନହିଁ ବାନାୟା, ତୁମ୍ ନହିଁ ବାନାୟା ।
ରେଜା-କୁଲି ବାନାୟା ।
କାମ୍ପାନି ବାବୁ ସୁଖ୍ ଉଡ଼ାୟା······।"

ପଡ଼ୋଶୀମାନେ ମଜା ନଅନ୍ତି । କାନେଇ ରହନ୍ତି କାମ ଥିଲେ ବ । ଚୁପା ସ୍ୱରରେ ହସନ୍ତି । କେତେବେଳେ ମନଖୋଲା । ସ୍ତ୍ରୀ ଲୋକ-ମାନେ କାମିମାକୁ କହନ୍ତି, ବୁଢ଼ା ବୋଧେ ବେଶୀ ପିଇ ଦେଉଛି । ପୁରୁଷମାନେ କହନ୍ତି ଆଇଜାକ୍‌କୁ, Kujur, Your father has a gifted tone. ସ୍ୟା'ଙ୍କୁ ପଲ୍ଲୀ ପ୍ରତିଭା ଭାବେ ଚିହ୍ନିତ କରାଯାଇ ଲୋକଗୀତ ପରମ୍ପରାର ବର୍ଷୀୟାନ କଳାକାର ହିସାବରେ ଦିଲ୍ଲୀ ଦୂରଦର୍ଶନ ଓ ଏପରିକି ବିଦେଶକୁ ପଠାଯିବା ଉଚିତ ।

ଆଇଜାକ୍ ମୁହୂର୍ତ୍ତେ ଅପ୍ରତିଭ ହୁଏ । କିନ୍ତୁ ଭ୍ରୂକ୍ଷେପ କରେନା । କିଛି କହେନା । ମୁଣ୍ଡ ହଲାଇଦିଏ । ଚାଲିଯାଏ ।

ଆଇଜାକ୍ କହିଲା ମାରିଆନୁସ୍‌କୁ : ଆବ୍‌ବା ! ତୁ ଗୀତ ଟିକେ ଧୀରେ ଧୀରେ ଗା' । ଏଠି ସମସ୍ତଙ୍କର ପିଲା ପାଠ ପଢ଼ୁଛନ୍ତି ତ, ସେମାନଙ୍କୁ ଅସୁବିଧା ହେଉଛି ପରା । ଆଉ ମୁଁ ତୋ ପାଇଁ ଦୁଇଖଣ୍ଡ କୁର୍ତ୍ତା, ଧୋତି ଦୁଇଖଣ୍ଡ ଆଣିଦେଇଛି । ତାକୁ ପିନ୍ଧ୍ । ଗ୍ଲେଟ ଲୁଗା ପିନ୍ଧି ଖୋଲା ଦେହରେ ତୁ ବୁଲି ବାହାରିଲେ ଲୋକେ ପସନ୍ଦ

କରୁନାହାନ୍ତି । ତୁ ମୁଣ୍ଡରେ ଆଉ ପଗଡ଼ି ବାନ୍ଧୁନୁ କିଆଁ ? ସେ ଯୁଗ ତ ଗଲାଣି ।

ବୁଢ଼ା ଥିଲାଥିଲା, କହିଲା : ପଗ୍‌ଡ଼ି ବନ୍ଧ୍‌ଲେ ଇଜ୍ଜତ ଚଲ୍‌ ଯାଇ କା ? ପଞ୍ଜାବୀ ମାନ୍‌କେ ଉ’ବାତ୍‌ କେହୋର୍‌ ନ କାହା ଥେଁ ?

ଆଇଜାକ୍‌ ଅନୁମୋଦନ କଲାଭଳି ମୁଣ୍ଡ ହଲାଇଲା ଓ କହିଲା : ମଧୁବାବୁଙ୍କର ସହିତ ଏ ଜାତିର ପଗଡ଼ି ମାଟିତଳେ ପୋତି ହୋଇଗଲା । ପଗଡ଼ି ପିନ୍ଧିଲେ ତୋର ଯଦି ଇଜ୍ଜତ ବଢ଼ୁଛି—ବଢ଼ା । କିନ୍ତୁ ଯୁଆଡ଼େ ଗଲେ ବି ତୋ’ଠାରୁ ଉଚ୍ଚା ଏ ଲଠିଟାକୁ ଧରି କାହିଁକି ଯାଉଛୁ ? ଏତେବଡ଼ ସହରରେ ରାତି ତ ରାତି, ଦିନ ବେଳା ବି କଣ ବାଘ ଭାଲୁ ବାହାରୁଛନ୍ତି ? ଲୋକ ହସିବା ସାର ହେଉଛି । ତୁ ତୋର ଆଦତ୍‌ ବଦଳା’ ।

ବୁଢ଼ା କିଛି ସମୟ ନୀରବ ରହିଲା । ଦୀର୍ଘଶ୍ୱାସ ଛାଡ଼ିଲା । ତା ମୁହଁ ମଳିନ ପଡ଼ି ଆସୁଥିଲା । ଘୋର ନିଃସଙ୍ଗ ଦେଖାଗଲା ସେ । ବଡ଼ବଡ଼ି କରି ସ୍ୱଗତୋକ୍ତି କଲାଭଳି କହିଲା, ଛଣ୍ଡି ମାନ୍‌ ବେହାୟା ଡ୍ରେସ୍‌ ପିନ୍ଧ୍‌କେ ଇକାର୍‌ ଉକାର ସାଏଁ ସାଇକ୍‌ଲେର୍‌ ସ୍କୁଟାର ମେ ଯାଏନ୍‌ ଉମାନ୍‌କେ ଲାଜ୍‌ ନ ଲାଗେଲ୍‌; ଆଉର୍‌ ମୋଏ ଲଠି ଧାଇର୍‌ କେର୍‌ ଗଲ୍‌ଲେ କା ଲାଜ୍‌ ?

କିଛି ସମୟ ପୁଣି ନୀରବରେ କପାଳରେ ହାତ ଦେଇ, ମୁଣ୍ଡ ତଳକୁ କରି ବସିବା ପରେ ସେ ନିଷ୍ପତ୍ତି ଶୁଣାଇଲା, ମୋଏ ଇଜାକ୍‌ ଚଲେକ୍‌ ନ ପାର୍‌ମୁ ।

ତା’ ପରଦିନ ହିଁ, ଦିନ ନଅଟା ବେଳେ, ନିଜ ପୋଷାକରେ ସେ ଚୁପ୍‌ଚାପ୍‌ ଫେରିଗଲା ତା’ ଗାଁକୁ । ଆଇଜାକ୍‌ ଥିଲା ଜେନେରାଲ ସିଫ୍‌ଟ୍‌ ଡିଉଟିରେ । କାମିନୀ ଫୋନ୍‌ କଲା ଦିନ ଦୁଇଟା ବେଳେ ।···

ସେ ତ ବାପାକୁ କିଛି କହିନଥିଲା ଖରାପ ଲାଗିବା ଭଳି । ଏଇ ଯେ ଧୋତି, କୁର୍ତ୍ତା ପିନ୍ଧିବା, ପଗଡ଼ି ନ ପିନ୍ଧିବା, ଲଠି ନ ଧରିବା (ମୁଁ ତ

ଅଛୁ ତୋର ପୁଅ—ସବୁଠୁ ମଜ୍‌ବୁତ ଲଠି—ତୋର ଦୃଢ଼ ମନୋବଳ), ବଡ଼ ପାଟିରେ ଗୀତ ନ ଗାଇ ଧୀରେ ଗାଇବାକୁ କହିବା—ତାହା ପୁଣି ସୁନ୍ଦର ଭାବେ ବୁଝାଇ, ଅନୁରୋଧ କରିବା ପରି—ଏଥିରେ ଏତେ ଖିନ୍ନ ହେବାଭଳି କଣ ଥିଲା ? ତୁ ନିଜ ହିସାବରେ ବଞ୍ଚିବାକୁ ଚାହିଁଲୁ ; ମତେ ଚାହିଁଲୁ ନାହିଁ : ହଉ ଯା' ମୁଁ ଆଉ କେବେ ବି ତତେ ଡାକିଯିବି ନାହିଁ ! ଆଇଜାକ୍ ଅଭିମାନରେ କାନ୍ଦି ପକାଇଲା ।

ଆଇଜାକ୍ ଆଉ ଗଲାନାହିଁ ଗାଁକୁ । କିନ୍ତୁ ପ୍ରତି ରବିବାର ଦିନ ହିଁ ତା' ମନରେ, ହୃଦୟରେ ସୃଷ୍ଟି ହେଉଥିଲା ବିଚିତ୍ର ଉଦ୍‌ବେଳନ । କାଳେ ବାପାର ମନ ମଧ୍ୟ ଏହିପରି ମନ୍ଥି ହେଉ ଯାଉଥିବ କି ? କାଳେ ସେ ପ୍ରକୃତରେ ଫେରିବାକୁ ଚାହୁଁଥିବ ଓ ଭାବୁଥିବ—ପୁଅ ଆସୁ ! ନାଃ......

ସେଇ ରବିବାର ଦିନ ଖରାବେଳେ ଖଣ୍ଡେ ବହି ଧରି ସେ ଶୋଇଶୋଇ ପଢ଼ୁଥିଲା । କେତେବେଳେ ଆଖି ଲାଗି ଆସିଲା ତା'ର । ଆଇଜାକ୍ ଦେଖିଲା ଏକ ସ୍ୱପ୍ନ । ଭୁବନେଶ୍ୱର । ଓଡ଼ିଶାର ରାଜଧାନୀ । ଓଡ଼ିଶାର ସବୁଠୁ ଅଧିକ ସଭ୍ୟ, ସମୃଦ୍ଧ ତଥା ସଂସ୍କୃତିସମ୍ପନ୍ନ ସହର । ଜଣେ ପଦସ୍ଥ ସରକାରୀ ଅଫିସରଙ୍କର ବଦଳି ହେଇଯାଇଥାଏ ଅନ୍ୟତ୍ର । ଘରେ ପତ୍ନୀ, ଦୁଇଟି ବଡ଼ିଲା ଝିଅ ଓ ବୁଢ଼ା ବାପା—ଅବସରପ୍ରାପ୍ତ ହାଇସ୍କୁଲ ଶିକ୍ଷକ । ଝିଅ ଦୁହିଁଙ୍କର ବୁଲିଯିବାରେ ଭାରି ଝୁଙ୍କ୍ । ସେମାନେ ଯୁଆଡ଼େ ବି ଯାଆନ୍ତୁ ଜେଜେବୁଢ଼ା ସେମାନଙ୍କ ସାଙ୍ଗରେ ଅବଶ୍ୟ ଯିବେ । ସେମାନେ କିନ୍ତୁ ତାହା ଚାହୁଁନଥିବେ । ଉଗ୍ର ଆଧୁନିକ ପୋଷାକ ସେମାନଙ୍କର । ବୁଢ଼ା ପିନ୍ଧନ୍ତି ଧୋତି, କୁର୍ତ୍ତା ଓ ଚପଲ । ହାତରେ ଧରନ୍ତି ଛତା, କି ଶୀତ, କି ଖରା, କି ବର୍ଷା । ନାତୁଣୀ ଦୁହେଁ ବିରକ୍ତ ହୁଅନ୍ତି—ତୁମେ ସବୁବେଳେ ଆମ ପଛେ ପଛେ କାହିଁକି ବାହାରି ପଡ଼ ? ତମେ ଆମର ଏସ୍କର୍ଟ ହେବା ଆମେ ଦରକାର କରୁନା ! ବୁଢ଼ା ନିଜ ଉଦ୍ଦେଶ୍ୟରେ ଅଟଳ । ସେମାନେ କହିଲେ, ତମେ ଆମ ସାଙ୍ଗରେ ସାଙ୍ଗରେ ଗଲିବନି କି ଛତାଧରି ବାହାରିବ ନାହିଁ । ବୁଢ଼ା କହିଲେ, କେବଳ ମୁଁ କାହିଁକି, ପ୍ରତ୍ୟେକେ ଛତା ଧରି ବାଟ ଚାଲିବା କଥା । ସେମାନେ କହିଲେ—ସେମିତିରେ ଷ୍ଟାଇଲ୍

ପଙ୍କଚର୍ ହୋଇଯିବ । ଯୋଗକୁ ସେଦନ ଝିଅ ଦୁହେଁ ଆଗରେ ଗୃଳୁଛନ୍ତି ଓ ବୁଢ଼ା ଗୃଳୁଛନ୍ତି ସେମାନଙ୍କ ପଛରେ, ଦୂରତା ରକ୍ଷାକରି—କୁଆଡ଼େ ଥିଲା ଆସିଲା ଅସରାଏ ବର୍ଷା । ଝିଅ ଦୁହେଁ ପଛକୁ ବୁଲଲେ । ଆଖପାଖର ଦୋକାନ ବାରଣ୍ଡା ଗୁଡ଼ିକରେ ଲୋକ ଭର୍ତ୍ତି ହୋଇଗଲେଣି ଓ ଏ ଦୁହେଁ ଭିଜିଗଲେଣି ସିନେମାର ଗାଧୂଆ ସିନ୍ ଭଳି । ଦୁହେଁ ଅନନ୍ୟୋପାୟ ହୋଇ ବୁଢ଼ାଙ୍କ ପାଖକୁ ଲାଗିଆସି ଛତା ତଳେ ମୁଣ୍ଡ ଗୁଞ୍ଜିବାକୁ ଉପକ୍ରମ କଲେ । ବୁଢ଼ା ଛତାକୁ ବନ୍ଦ କରିଦେଲେ ଓ ଛତା ବେଣ୍ଟରେ ଦୁଇ ନାରୁଣୀଙ୍କ ପିଠି, ଅଣ୍ଟା, ପିଚ୍ଛ, ଜଂଘରେ ପ୍ରହାର କରିବା ଆରମ୍ଭ କଲେ । ପୁଣି ଛତା ଫିଟାଇଲେ ଓ ନିର୍ଲିପ୍ତ ଭାବେ ଧୀର ପଦପାତରେ ଘରମୁହାଁ ବାଟ ଧରିଲେ ।

ପୂର୍ବରୁ ବି ଥରେ ଏଇ ସ୍ୱପ୍ନଟିକୁ ଦେଖିଥିଲା କି ଆଇଜାକ୍ ? କିମ୍ବା ଦେଖିଥିଲା ବା ଶୁଣିଥିଲା କାହାଠାରୁ ଏ ଘଟଣା ? କେଉଁ ବହିରୁ କି ପତ୍ରିକାରୁ ପଢ଼ିଥିଲା କି ? କିଛି ମନେ ପଡ଼ୁନି ସଠିକ୍ ।

କିନ୍ତୁ ସ୍ୱପ୍ନଟି ଦେଖିବା ପରେ ସେ ଭାରି ବିଚଳିତ ବୋଧ କଲା । ଅସ୍ଥିର ଭାବେ ସେ ପିନ୍ଧିଲା ପୋଷାକ । ମୋଟର ସାଇକଲ ଷ୍ଟାର୍ଟ କଲା । ଛୁଟିଲା ଗାଁକୁ । ସେ ଗାଁରେ ପହଞ୍ଚିବା ବେଳକୁ ଓଦା କାଠରେ ସଦ୍ୟ ଡ଼ଇ ଧରିବା ପରି ଯବୁ କୋଣରୁ ଅନ୍ଧାର ନଇଁ ଆସୁଥାଏ ଗାଁ ଉପରକୁ । ସେ ଘରେ ପଶିବା ବେଳକୁ ବୁଢ଼ା ଚୂଲରେ କଣଗୋଟେ ବସାଇ ଗୁଣୁଗୁଣୁ ଗୀତ ଗାଉଥାଏ ।

ଅତି ପ୍ରେମରେ, ମୂଳଏମ୍ ସ୍ୱରରେ ଗ୍ରେଟ ପିଲାଟିଏ ପରି ଆଇଜାକ୍ ସମ୍ବୋଧନ କଲା—ଆ···ବ୍···ବା !

ବୁଢ଼ା ତା'ର ଅଣ୍ଟା ଓ ବେକ ଘୂରାଇ ପଛକୁ ଗୃହିଁଲା । ପୁନଶ୍ଚ ପୂର୍ବ ସ୍ଥିତିକୁ ଫେରିଗଲା ନମିଷକେ, ଇଲାଷ୍ଟିକ୍ ପରି । ଫେରିଯିବା ପାଇଁ ଆଇଜାକ୍ ତା'ଠାରେ ନେହୁରା ହେଲା । ସେ ମାନିଲା ନାହିଁ । ଆଇଜାକ୍ ସେ ରାତିକ ରହିଲା ଗାଁରେ । ସକାଳକୁ ବୁଢ଼ାର ନିଶା ଉତୁରି ଯାଇଥିଲା । ସେ ଦିଶୁଥିଲା ଖୁବ୍ ସହଜ, ସରଳ, କ୍ଷମାଶୀଳ । ସତେ କି ଗୋଟିଏ କଅଁଳା ବାଛୁରି ! କଥାଟିଏ କହିଲେ ରହିବ ବୋଲି ପ୍ରତ୍ୟାଶ୍ଚ

ସୃଷ୍ଟି ହେଲା ଆଇଜାକ୍‌ର ମନରେ । ଅତଏବ ବିନୟ ଭାବ ପ୍ରକାଶ କରି ସେ ଧରି ପକାଇଲା ତା' ବାପାର ହାତ ।

ବୁଢ଼ା ହାତ ଛଡ଼ାଇ ନେଲା ଓ ଆଇଜାକ୍ ଉପରୁ ମୁହଁ ଫେରାଇ ନେଇ ନଜେ ବି ବୁଲିଗଲା ପୂର୍ବ ଦିଗକୁ । କହିଲା ଗମ୍ଭୀର ସ୍ୱରରେ, ମୋଏ ହୁଆଁ ଯାଏକ୍ ନ ଗୃହଁନ୍ ।

ବୁଢ଼ାର ଖୋଲା ପିଠି ଉପରୁ ଆଖି ଫେରାଇ ଆଇଜାକ୍ ପଶ୍ଚିମକୁ ମୁହଁ ଘୁରାଇଲା । ଆସ୍ତେ ଆସ୍ତେ ତା' ମୁହଁକୁ ଢାଙ୍କିଦେଲା ଅସହାୟତା ଓ ଦୁଃଖର କଳା ବାଦଲ । ବାପାକୁ ଆଉ ସେ କେମିତି ବୁଝାଇବ ?

ବୁଢ଼ା ସେମିତି ପୂର୍ବ ଦିଗକୁ ମୁହଁ ରଖି ପୁଣିଥରେ କହିଲା, ମାଏ ଆଉର୍ ଉ' ଜାଗା କେହ୍ବଓ ନ ଯାମୁ ! ଯଦି ଆଉର୍ ଏକ୍ ବେର୍ ବୋଲାଇକ୍ ଆବେ ହଲେ ମୋଏ ତୋର୍ ବାପ୍ ନା ଲାଗୋ !

: ଇସ୍...ଇସ୍..., ଆଇଜାକ୍ ଉଚ୍ଚାରଣ କଲା ଅସ୍ପଷ୍ଟ ଧ୍ୱନି । ବାପା କହୁଛି, ଆଉଥରେ ସେ ତାକୁ ଯଦି ଡାକିବାକୁ ଆସେ ତେବେ ସେ ତା'ର ବାପା ନୁହେଁ !

ଆଇଜାକ୍ ସ୍ଥାଣୁ ହେଇଗଲା । ବୁଢ଼ା ଥିଲା ସ୍ଥିର, ନିଶ୍ଚଳ । ସତେ କି ସେ ପଥର ପାଲଟି ଯାଇଥିଲା ।

ନିଃଶବ୍ଦରେ ଆଇଜାକ୍ ଧୀରେ ଧୀରେ ପାଦ ପକାଇ ଘରୁ ବାହାରିଲା । ମୋଟର ସାଇକଲ୍ ଷ୍ଟାର୍ଟ କଲା । ଫେରିଗଲା ।



